ଗୀତିନାଟ୍ୟ

# ବିଦ୍ୟାସାଗର

ଗୋପାଳ ଛୋଟରାୟ



## ଉତ୍ସର୍ଗ

ମୋ ପାର୍ଥିବ ଜୀବନର ପରମ ହିତୈଷୀ
ବନ୍ଧୁ ଭଜକୃଷ୍ଣଙ୍କୁ

—ଗୋପାଳ

# ବିନ୍ଦୁସାଗର

ଚରିତ୍ର :

ପାର୍ବତୀ
ଶିବ
ବସୁନ୍ଧରା
ବିଷ୍ଣୁ
ବ୍ରହ୍ମା
କୀର୍ତ୍ତି
ବାସ
ଗୋରକ୍ଷକ

## ପ୍ରଥମ ଦୃଶ୍ୟ

[ ପବିତ୍ର କାଶୀ-ବିଶ୍ୱେଶ୍ୱର ଧାମ । ପରମେଶ୍ୱର ଶିବ ଓ ଦେବୀ ପାର୍ବତୀ ଆଲୋଚନାରତ । ]

ପାର୍ବତୀ—ନା, ନା ପ୍ରଭୁ ! ମୁଁ ସେକଥା କହୁନାହିଁ । ତୁମର ଅତି ପ୍ରିୟଭୂମି ଏଇ କାଶୀ ବାରାଣସୀ ଧାମ । ଏ ଧାମରେ ତୁମେ କେବଳ ଶିବ ନୁହଁ, ଈଶ୍ୱର ନୁହଁ, ଏଠି ତୁମେ ବିଶ୍ୱେଶ୍ୱର । ଆମ କୈଳାସ ପର ପ୍ରିୟ ଆଉ ପବିତ୍ର ଏ ତୀର୍ଥ । ଏଠି ମୋର ଆନନ୍ଦର ସୀମା ନାହିଁ ।

ଶିବ—ତା' ହେଲେ ?

ପାର୍ବତୀ—ସର୍ବବ୍ୟାପୀ ଶିବଙ୍କର ଏମିତି ଦୃଶ୍ୟ ତୀର୍ଥ ଆଉ କେଉଁଠି ଅଛି ? କେଉଁଠି ସେ ଭୂଖଣ୍ଡ ?

ଶିବ—ସେଠିକି ଯିବ ଦେବୀ ?

ପାର୍ବତୀ—ଯଦି ମୋ ପ୍ରଭୁ କୃପା କରନ୍ତୁ, ନିଶ୍ଚୟ ଯିବି ।

ଶିବ—ମାତ୍ର ଗୋଟିଏ ସର୍ତ୍ତ—ତୁମେ ଏକାକିନୀ ଯିବ ।

ପାର୍ବତୀ—ଏକାକିନୀ ! ତୁମେ ଯିବ ନାହିଁ ?

ଶିବ—ଯିବି, ମାତ୍ର ତୁମ ସଙ୍ଗରେ ନୁହେଁ; ପରେ ଯିବି । ତୁମେ ଏବେ ଏକାକିନୀ ଯାଅ ।

**ପାର୍ବତୀ**—ଯିବ ପ୍ରଭୁ, ତୁମର ଆଦେଶ ପାଳନ କରିବି । କୁହ ତେବେ, କେଉଁଠି ସେ ତୀର୍ଥ ? କ'ଣ ତାର ନାମଧାମ ?

ଶିବ—ଏକାମ୍ରକାନନ ।

ପାର୍ବତୀ—ଏକାମ୍ରକାନନ !···ଆହା, କି ସୁନ୍ଦର ନାମ ! ଏ ଶ୍ରୁତିରେ ଯେମିତି କିଏ ଅମୃତ ଢାଳିଦେଲା । ଏକାମ୍ର-କାନନ !

ଶିବ—ଏଇ ଏକାମ୍ରକାନନ ଦେବତାମାନଙ୍କୁ ସୁଦ୍ଧା ଦୁର୍ଲ୍ଲଭ; ବାରଣସୀ କ୍ଷେତ୍ରପରି ମହାନ୍ ଶିବ-ପୀଠ । କୋଟିଏ ଶିବଲିଙ୍ଗ ମଧ୍ୟରେ ଅଛନ୍ତି ଜ୍ୟୋତିଃଲିଙ୍ଗ ଭୁବନେଶ୍ୱର ।

**ପାର୍ବତୀ**—ଭୁବନେଶ୍ୱର !

ଶିବ—ହଁ ଦେବୀ, ଭୁବନେଶ୍ୱର । ପୂଜନ ଭଜନରେ ଏଠି ଚତୁର୍ବର୍ଗ ପ୍ରାପ୍ତି ହୁଏ । ଏପର୍ଯ୍ୟନ୍ତ ଗୋପନ ଥିଲା ଏ ଦୁଇ ପୀଠର ମାହାତ୍ମ୍ୟ । ଆଜ ତୁମେ ହିଁ ପ୍ରଥମେ ଜାଣିଲ ।

**ପାର୍ବତୀ**—ଏକାମ୍ରକାନନ ଆଉ ଭୁବନେଶ୍ୱର ! ନାମ ଆଉ ଧାମ, ଦୁଇଥିରେ ମାହାତ୍ମ୍ୟ ଅଛି, ମାଧୁରୀ ଅଛି । ଏବେ ଆଦେଶ କରନ୍ତୁ ପ୍ରଭୁ—ମୋ ଯାତ୍ରା ଆରମ୍ଭ କରିବି ।

ଶିବ—ହୃଷ୍ଟ ମନରେ ଯାଅ ଦେବୀ । ଏଠୁ ପୂର୍ବ ଦିଗ, ତା'ପରେ ଦକ୍ଷିଣମୁଖ ହୋଇ ତୁମର ବାହନ କେଶରୀପୃଷ୍ଠରେ ଯାତ୍ରା କର । ଯଥାସମୟରେ ମୁଁ ସେହି ପୁଣ୍ୟ-ପୀଠରେ ପହଞ୍ଚିବି ଦେବୀ ! ତୁମେ ଯେଉଁ ରୂପରେ ଥିବ, ମୁଁ ଠିକ୍ ସେଇ ରୂପ ଧାରଣ କରି ପହଞ୍ଚିବି ।

**ପାର୍ବତୀ**—ପ୍ରଣାମ ପ୍ରଭୁ !

## ଦ୍ୱିତୀୟ ଦୃଶ୍ୟ

[ ଭୁବନେଶ୍ୱର ପୀଠ—ଏକାମ୍ରକାନନ । ଉପସ୍ଥିତ ଦେବୀ ପାର୍ବତୀ । ]

**ପାର୍ବତୀ—ପବିତ୍ର** ଏକାମ୍ରକାନନ ପ୍ରଦକ୍ଷିଣ କଲି—ଜ୍ୟୋତିଃଲିଙ୍ଗ ଭୁବନେଶ୍ୱରଙ୍କୁ ପୂଜା ଅର୍ଚ୍ଚନା କଲି । ମୋର ଶିବ-ପ୍ରିୟା ନାମ ସାର୍ଥକ ହେଲା ।···ମାତ୍ର ଏ ରହସ୍ୟ ତ ମୁଁ କିଛି ବୁଝି-ପାରୁନି ? କାହାର ଏ ଖେଳୁପଲ ? ମୁଁ ଏ ପୀଠକୁ ଆସିବାଦିନୁ ପ୍ରତିଦିନ ଏ ଅଲୌକିକ ଦୃଶ୍ୟ ଦେଖୁଛି । କୋଉଠୁ ଆସୁଚନ୍ତି —ପୁଣି କୋଉଠିକି ଯାଉଚନ୍ତି ? କି ଲୋଭମୟ ସେମାନଙ୍କର ଦେହର ରଙ୍ଗ ! କୋଉଠି ଟିକିଏ ମଳ ନାହିଁ—ଧୂଳି ନାହିଁ । ପ୍ରତିଦିନ ପାଣି ଭିତରୁ ବାହାରି ଆସି ଏକସଙ୍ଗରେ ଜଳପାନ କରୁଚନ୍ତି । ତା'ପରେ ଗୋଟି ଗୋଟି ହୋଇ ଆପେ ଆପେ କ୍ଷୀର ଜପୁଜାଇ ଶିବଲିଙ୍ଗଙ୍କୁ କ୍ଷୀରସ୍ନାନ କରାଉଚନ୍ତି—ସତେ ଯେମିତି ସେମାନେ ଶିବଙ୍କର ସେବାକାରୀ ! ତା'ପରେ ଏକ ସଙ୍ଗରେ ସମସ୍ତେ ମଥା ଲଗାଇ ପ୍ରଣାମ କରି, ଲିଙ୍ଗ ପ୍ରଦକ୍ଷିଣ କରି ପୁଣି ପାଣି ଭିତରେ ଉଭେଇ ଯାଉଛନ୍ତି । କଣ ଏ ରହସ୍ୟ ? ଏ ରହସ୍ୟ କଥା ତ ମୋ ପ୍ରଭୁ ମତେ କିଛି କହି ନାହାନ୍ତି···

[ ଜଣେ ଗୋରକ୍ଷକ ଆସିଲା ]

ଗୋରକ୍ଷକ—ମା !

ପାର୍ବତୀ—କିଏ ତୁମେ ?

ଗୋରକ୍ଷକ—ମୁଁ ଜଣେ ଗାଈଆଳ ।

ପାର୍ବତୀ—ଗାଈଆଳ ! ତୁମେ ତେବେ ଜାଣିଥିବ…

ଗୋରକ୍ଷକ—କେଉଁ କଥା ମା ?

ପାର୍ବତୀ—ଏ ଯେଉଁ ଗାଈପଲ…

ଗୋରକ୍ଷକ—ଗାଈପଲ ?

ପାର୍ବତୀ—ପ୍ରତିଦିନ ଏ ଯେଉଁ ଗାଈପଲ ଏଠିକି ଆସୁଚନ୍ତି ?

ଗୋରକ୍ଷକ—ଓ, ହଁ…ମୁଁ କାଲି ଦେଖିଲି ।

ପାର୍ବତୀ—କାହାର ସେ ଗାଈପଲ ?

ଗୋରକ୍ଷକ—ମୁଁ ଜାଣିନାହିଁ ।

ପାର୍ବତୀ—ତୁମେ ଏଠିକାର ଗାଈଆଳ ପରା ?

ଗୋରକ୍ଷକ—ନାଇଁ ମା, ମୁଁ ଏଠିକାର ନୁହେଁ ।

ପାର୍ବତୀ—ତେବେ ?

ଗୋରକ୍ଷକ—ଆମ ଘର ଯାଇ କାହିଁ କେତେ ଦୂରରେ । ଏ ଯୋଉ ବଣ ଏଠି ଦେଖୁଚ, ତା ସେପାଖକୁ ଆହୁରି ବଣ—ତା ସେପାଖକୁ ଆହୁରି, ଆହୁରି ବଣ—ତା ସେପାଖକୁ ପାହାଡ଼—ପାହାଡ଼ ସେପାଖକୁ ପୁଣି ବଣ, ପୁଣି ପାହାଡ଼ । ସେଇ ପାହାଡ଼ ଶିଖରେ ଆମ ଘର ।

ପାର୍ବତୀ—ଏ କ୍ଷେତ୍ରର ମାହାତ୍ମ୍ୟ ତୁମେ ଜାଣ ?

ଗୋରକ୍ଷକ—ଏ କ୍ଷେତ୍ରକୁ ତ କେବେ ଆସି ନଥିଲି, ଜାଣିବି କେମିତି ?

ପାର୍ବତୀ—ଏଠିକି ଆସିଥିଲ କାହିଁକି ?

ଗୋରକ୍ଷକ—ମୋ ପଲରୁ ଗୋଟାଏ ବଳଦ ହଜିଗଲା ଯେ ତାକୁ ଖୋଜି ଖୋଜି କାଲି ଆସି ଏଠି ପହଞ୍ଚିଲି । କାଲି ରାତିରେ ସେଇ ବେଲ ବଣରେ ଶୋଇ ପଡ଼ିଲି । ଆଜି ବାହୁଡ଼ି ଯାଉଛି ।

ପାର୍ବଣ—ଆଚ୍ଛା, କାଲି ଦେଖିଥିବ ତ, ସେ ଗାଈପଲ ପାଣିଭିତରୁ ବାହାରି ଆସୁଛନ୍ତି ?

ଗୋରକ୍ଷକ—ହଁ ।

ପାର୍ବଣ—ପାଣି ଭିତରୁ କୁଆଡ଼ୁ କେମିତି ଆସୁଚନ୍ତି ?

ଗୋରକ୍ଷକ—ପାଣିଭିତରୁ ଯେତେବେଳେ ଆସୁଚନ୍ତି, ପାତାଳ-ପୁରୀରୁ ଆସୁଥିବେ ।

ପାର୍ବଣ—ପୁଣି ସେଇ ପାଣି ଭିତରେ ପଶି କୁଆଡ଼େ ଯାଉଚନ୍ତି ?

ଗୋରକ୍ଷକ—ଯାଉଚନ୍ତି ଯେତେବେଳେ, ସେଇ ପାତାଳପୁରୀକୁ ଯାଉଥିବେ ।

[ଗୋରକ୍ଷକ ଯିବାକୁ ଲାଗିଲା]

ପାର୍ବଣ—ଆଶ୍ଚର୍ଯ୍ୟ ! ··· ତୁମେ ପୁଣି କୁଆଡ଼େ ଯାଉଚ ?

ଗୋରକ୍ଷକ—ଯାଉଚି ବଳଦଟାକୁ ଏଠି ଘଡ଼ିଏଅଧେ ଖୋଜି ଘରକୁ ବାହୁଡ଼ିଯିବି···ଯାଉଚି ମା !

[ପ୍ରସ୍ଥାନ]

ପାର୍ବଣ—ହୁଁ ! କେମିତି କାହାଠୁ ଏ ରହସ୍ୟ ଜଣାପଡ଼ିବ ? ଆଜି ତ ଧେନୁପଲ ଆସିବାର ବେଳ ହୋଇଗଲା । (ଟିକିଏ ରହି) ଏଇ, ଧେନୁପଲ ଆସିଲେ । (ଅଦୂରରେ ଧେନୁପଲଙ୍କ ଆବିର୍ଭାବ) ଠିକ୍ ସେଇ ଢଙ୍ଗ, ସେଇ କର୍ମ···ଏଇ, ଗୋଟି ଗୋଟିକର ସମସ୍ତେ କ୍ଷୀରସ୍ନାନ କରାଉଚନ୍ତି । ସେବାରେ ଟିକେମାତ୍ର ତ୍ରୁଟି

ନାହିଁ । ତା'ପରେ—ତା'ପରେ ସମସ୍ତେ ଆଣ୍ଠୁ ମାଡ଼ି ମଥା ଲଗାଇ ପ୍ରଣିପାତ କରୁଚନ୍ତି । ନା, ଏ ଧେନୁଦଳ ମୋ ମନପ୍ରାଣକୁ ଆଚ୍ଛନ୍ନ କରି ରଖିଲେଣି । ଆଜ ସେମାନଙ୍କୁ ମୁଁ ଛାଡ଼ିବ ନାହିଁ—ସେମାନଙ୍କୁ ଛାଡ଼ି ମୁଁ ରହିପାରିବ ନାହିଁ । ହାତରେ କେନ୍ଦୁ ବାଡ଼ି ଧରି ମୁଁ ସେମାନଙ୍କୁ ବାଟ ଓଗାଳିବ । ... ଏଇ, ସେମାନେ ବଗିଚା ପ୍ରଦକ୍ଷିଣ କରି ପାଣିକୂଳକୁ ବାହାରିଲେଣି । (ଧେନୁଦଳକୁ ଉଦ୍ଦେଶ୍ୟ କରି) ନା-ନା, ମୁଁ ଆଜ ତୁମମାନଙ୍କୁ ଛାଡ଼ିବ ନାହିଁ । ଆସ-ଆସ, ବାଛୁଡ଼ି ଆସ; ମୁଁ ତମମାନଙ୍କୁ ପାଳିବ, ପୋଷିବ, ଗୋ-କ୍ଷୀରରେ ନିତ୍ୟପ୍ରତି ଭୁବନେଶ୍ୱରଙ୍କୁ ସ୍ନାନ କରାଇବ । ହେ-ହେ— ଯାଅ ନାହିଁ, ଯାଅ ନାହିଁ । ଏଁ, ଏ କଣ ! ଗାଈଦଳ ଯେ ଅସମ୍ଭାଳ ହୋଇ ଏଣେତେଣେ ଧାଇଁ ପଳାଉଚନ୍ତି—ହମ୍ବାରଡ଼ି ଦେଇ ଖୁରାରେ ଭୂଇଁ ଚିରୁଚନ୍ତି, ଶିଙ୍ଗରେ ମାଟି ତାଡ଼ୁଚନ୍ତି । ନା—ମୁଁ ଏମାନଙ୍କୁ ସମ୍ଭାଳି ପାରୁନାହିଁ । କଣ କରିବ ?

ଗୋରକ୍ଷକ—(ଦୂରରୁ ବଡ଼ପାଟିରେ) ମା—ମା—ମୋହନ ମନ୍ତ୍ର ପଢ଼ି ଗାଈଦଳ ଉପରକୁ ଧୂଳି ଫିଙ୍ଗି ଦିଅ । ତା ନହେଲେ ସେମାନେ ବଶ ହେବେ ନାହିଁ । ମନ୍ତ୍ରଧୂଳି ପଡ଼ିଲେ ବୋଲ ମାନି ଗୋଟି ଗୋଟି ହୋଇ ତମ ପାଖକୁ ଆସିବେ ।

ପାବଙ୍ଗ—ଗୋରକ୍ଷକ ଏ ନିର୍ଦ୍ଦେଶ ଦେଲା ? କିଏ ଏଇ ଗୋରକ୍ଷକ ! (ଟିକିଏ ରହି) ହଁ—ମୁଁ ମନ୍ତ୍ର ଧୂଳି ଫିଙ୍ଗିବ ।

[ମନ୍ତ୍ରଧୂଳି ଫିଙ୍ଗିଲେ]

ପାବଙ୍ଗ—ଆହା ! ଏଇ ତ, ମନ୍ତ୍ରଧୂଳିବଳରେ ଗାଭୀମାନେ ଧୀର ଶାନ୍ତ ଗତିରେ ହଳ ଦୋହଲି ମୋ ଆଡ଼କୁ ଆସୁଚନ୍ତି; ସତେ ଯେମିତି ସମସ୍ତେ ମୋର ବତ୍ସା—ମୋର ନନ୍ଦନା ।

ପାର୍ବଣୀ— (ଗୀତ)

ଭୁବନମୋହନ, ଏ ଏକାମ୍ରବନ
ପୂଜ ମୁଁ ଭୁବନେଶ୍ୱର,
ପାଇଲ ମୁଁ ଏଠି, ଏ ଅମୂଲ୍ୟ ଧନ
ପାଇଲ ମୁଁ ଧେନୁପଲ, ରେ ନନ୍ଦମା
ପାଇଲି ମୁଁ ଧେନୁପଲ । ୧ ।

ମାତୃସ୍ନେହେ ମୁଁ ତ ପାଳିବି ପୋଷିବି
ହୋଇ ଗୋପାଳମା ବେଶ
ଯେ ବରଦ ତୁମେ ସେବୁଚ ଏକାମ୍ରେ
ସେଇ ମୋ ପ୍ରଭୁ ମହେଶ, ରେ ନନ୍ଦମା
ସେଇ ମୋ ପ୍ରଭୁ ମହେଶ । । ୨ ।

ବାଛୁ ବାଛୁ ତୁମ ନାଁ ମୁଁ ଦଉଛ
(ହସି) ପରଖିବ ତୁମ ବୁଦ୍ଧି
ନାଁ ଧରି ଯେବେ ଡାକବି, ଆସିବ
ମୋର ପାଶେ ନାଚକୁଦ, ରେ ନନ୍ଦମା
ମୋର ପାଶେ ନାଚକୁଦ । । ୩ ।

[ ଗୀତ ଗାଇବା ଅବସରରେ ପାର୍ବଣୀ ଗାଈମାନଙ୍କୁ ଆଦର କରୁଥାନ୍ତି । ]

ତୋ ନାଁ ଧୁଳୁବାଘ
ତା ନାଁ ଘଁ-ବାଘ
ଧପ ଧପ ଧଳା ତୁ ଲୋ, ତୋ ନାଁ ଧଉଳ
ବଉଳ ଫୁଲର ରଙ୍ଗ, ତୋ ନାଁ ବଉଳ ।

ସୁନା ଆଖି ଉଳଉଳ, ଢୋ ନାଁ 'ସୁନେଇ
କମଳ ଢୋ' ରୂପାଝର, ଢୋ ନାଁ ରୂପେଇ ।
ଢୋ ନାଁ ଉଜଳ ଲେ
ଢୋ ନାଁ କଜଳ
ଢୋ ନାଁ ନେଉଳ ଲେ
ଢୋ ନାଁ ଛଇଳ
କନକନ ହଉ ତୁ'ଲେ ଢୋ ନାଁ ଓଠଲେଇ
(ତୁ) ଗେଲରେ ଭୁଷ ଚୁମଢେ ଢୋ ନାଁ ଗେହ୍ଲେଇ ।

ସଭଏଁ ତ ତୁମେ କାମଧେନୁ ମୋର
ସଭଏଁ ମୋ ଗଳାମାଳ
ଗୋଷ୍ଠସେବାବ୍ରତ ନେଲ ମୁଁ ଆଜ୍‌ଠୁ
ହେଲ ମୁଁ ଗୋପବାଳୀ, ରେ ନନ୍ଦିନୀ
ହେଲ ମୁଁ ଗୋପବାଳୀ । । ୪ ।

ପାର୍ବତୀ—ଆସ, ସଭଏଁ ମୋ ପଛେ ପଛେ ଆସ । ଏକାମ୍ରରେ ଚରାଇବ, ଗୋଠରେ ଶୁଆଇବ । ସକାଳେ କ୍ଷୀର ଦୋହନ କରି ଭୁବନେଶ୍ୱରଙ୍କୁ ଅର୍ପଣ କରିବ; ଆସ ।

## ତୃତୀୟ ଦୃଶ୍ୟ

[ କଣ୍ଟୁଦନ ପରର ଘଟଣା । ଏକାମ୍ରକୁ ଆସିଲେ ଦୁଇ ଦାନବ ରାଜପୁତ୍ର କୀର୍ତ୍ତି ଆଉ ବାସ । ତାଙ୍କଠୁ ଅଦୂରରେ ଏକ ଚମ୍ପା-ଗଛମୂଳରେ ଗୋପାଳୁଣୀବେଶରେ ବସିଛନ୍ତି । ]

କୀର୍ତ୍ତି—ବାସ !

ବାସ—ଭାଇ !

କୀର୍ତ୍ତି—ଏ ବନସ୍ଥଳୀକୁ ଆମେ ବହୁବାର ଭ୍ରମଣରେ ଆସିଛୁଁ···

ବାସ—ଆସିଛୁ ସତ, ମାତ୍ର ଏଠି ଦେବ, ଦାନବ, ନର, କିନ୍ନର କାହାର ସାକ୍ଷାତ କେବେ ପାଇନୁ ।

କୀର୍ତ୍ତି—ମାତ୍ର ଆଜ ମୋର ମନେହଉଛି, କିଛୁ ଗୋଟାଏ ପରିବର୍ତ୍ତନ ଏଠି ଘଟିଛି । କାହାର ଆବିର୍ଭାବ ଏଠି ହୋଇଛି ।

ବାସ—ଆବିର୍ଭାବ !

କୀର୍ତ୍ତି—ତୁ କିଛି ଅନୁଭବ କରିପାରୁନୁ ?

ବାସ—ମୁଁ ? ··· ହଁ ଭାଇ, ମୋର ପଞ୍ଚପ୍ରାଣ ଯେମିତି କମ୍ପିଉଠୁଛି, ଏଇଟି ଆମ ଆଖପାଖରେ କେହି ରହିଛି ।

କୀର୍ତ୍ତି—ତେବେ କିଏ ସେ ? କାହିଁ ? କେଉଁଠି ?

ବାସ—(ହଠାତ୍) ଭାଇ ! ଦେଖ, ସେଇ ଚମ୍ପାଗଛମୂଳେ ସିଏ ବସିଛି···

କାର୍ତ୍ତି—ସତେ ତ ! ଚମ୍ପାଗଛମୂଳେ ବସିଚି···ଅପରୂପ ସୁନ୍ଦରୀ ···ବିଶ୍ୱମୋହିନୀ ଯୁବତୀ···ମଥାରେ ଜୁଡ଼ା, ହାତରେ କେନ୍ଦୁବାଡ଼ି···

ବାସ—ଅଙ୍ଗର ବେଶରୁ ଜଣାପଡ଼େ ସେ ଗୋପାଳିନୀ ।

କାର୍ତ୍ତି—ମାତ୍ର ଅଙ୍ଗର ଝଲକ କହୁଚି ସେ ଗୋପାଳିନୀ ନୁହେଁ ରାଜରାଣୀ । ଆମର ଚେ ।ଗ୍ୟା, ଆମର ଭୋଗ୍ୟା । ଆ ଯିବା ।

[କାର୍ତ୍ତି ଓ ବାସ ଦୁହିଁଙ୍କର ଅର୍ଥସୂଚକ ମଧୁର ହସ]

କାର୍ତ୍ତି—ଏ ଚମ୍ପାଗଛମୂଳେ ବସିଚ କିଏ ତୁମେ ?

ପାର୍ବତୀ—ତୁମେ କିଏ ?

କାର୍ତ୍ତି—ଆମେ ? ଆମେ ଦୁହେଁ ଦୁଇ ଦାନବ ରାଜକୁମାର, କାର୍ତ୍ତି-ବାସ । ମୁଁ କାର୍ତ୍ତି···

ବାସ—ମୁଁ ବାସ ।

କାର୍ତ୍ତି—ମୁଁ ଜ୍ୟେଷ୍ଠ···

ବାସ—ମୁଁ କନିଷ୍ଠ ।

କାର୍ତ୍ତି—ଏବେ ତୁମେ କୁହ, ତୁମେ କିଏ ?

ପାର୍ବତୀ—ଦେଖୁଚ ତ ମୁଁ ଜଣେ ଗୋପାଳିନୀ !

କାର୍ତ୍ତି— ନା, ତୁମେ ଛଳନା କରୁଚ ।

ବାସ—ତୁମେ ଗୋପାଳିନୀ ନୁହଁ—ତୁମେ ରାଜନନ୍ଦିନୀ ।

କାର୍ତ୍ତି—ହୋଇପାରେ, ତୁମେ ବିଷ୍ଣୁପ୍ରିୟା ଲକ୍ଷ୍ମୀ—କିମ୍ବା ଇନ୍ଦ୍ରପତ୍ନୀ ଶଚୀ—ମର୍ତ୍ତ୍ୟ ଭ୍ରମଣରେ ଆସିଚ ।

ବାସ—ତୁମେ ସ୍ୱର୍ଗର କୌଣସି ଅପ୍ସରୀ ନୁହଁ ତ ? ମେନକା, ଉର୍ବଶୀ ରମ୍ଭା ? କୌଣସି ମୁନି ଋଷିଙ୍କର ତପଭଙ୍ଗ କରିବାକୁ ଏଠି ବସିଚ ?

କୀର୍ତ୍ତି—ମହାନ୍ ଦୈତ୍ୟକୁଳରେ ଆମର ଜନ୍ମ । ଶତ ସହସ୍ର ରୂପସୀ ତରୁଣୀ ଆମ ଉଆସରେ ଅଛନ୍ତି । କିନ୍ତୁ ଏ ରୂପ, ଏ ଲାବଣ୍ୟ ତ ଆମ ଦୃଷ୍ଟିକୁ କେବେ ଆସିନି ! ··· ଆଚ୍ଛା, ତୁମେ କିଏ କେଉଁ ପାତାଳପୁରୀର ରାଜକୁମାରୀ—ପତି ଅନ୍ୱେଷଣରେ ଏଠିକି ଆସିଛ ?

ବାସ—ଆଜ ଆମର ଉକଣ୍ଠା ବଢ଼ାଇଲା ସୁନ୍ଦରୀ, କୁହ ତୁମେ କିଏ ?

କୀର୍ତ୍ତି—ଆମ କଥାରେ ତୁମେ ଏମିତ ମୃଦୁମନ୍ଦ ହସ ହସୁଚ ଯେ ! ତୁମେ କିଏ କେଉଁ···

( ଗୀତ )

ପାର୍ବତୀ—ନୁହେଁ ମାୟାବିନୀ, ନୁହେଁ କୁହକିନୀ
ନୁହେଁ ମୁଁ ରାଜରାଣୀ
ନୁହେଁ ମୁଁ ଅପସରୀ ପତିମନହରୀ
ନୁହେଁ ବସ୍ତ୍ରପାଟରାଣୀ, ହେ ବୀର
ମୁଁ ତ ନୁହିଁଇ ଇନ୍ଦ୍ରବନିତା, ହେ ବୀର
ନୁହେଁ ଦେବ-ଦାନବ ଦୁହିତା, ହେ ବୀର । ୧ ।

ଗିରିଶୋଭିଣୀ ହିମାଳୟ ଗିରି
ମୁଁ ସିନା ତାଙ୍କ ନନ୍ଦନୀ
ନାମ ମୋ ପାର୍ବତୀ ଡାକନାମ ସତୀ
ବେଶ ମୋର ଗୋପାଳିନୀ, ହେ ବୀର
ଧେନୁସେବା ଅଟେ ମୋର ଧର୍ମ, ହେ ବୀର
କ୍ଷୀରପସରା ଅଟେ ମୋ କର୍ମ, ହେ ବୀର । ୨ ।

ପାର୍ବତୀ—ଶୁଣିଲ ତ କାର୍ତ୍ତି-ବାସ, ମୁଁ କିଏ ? ମୁଁ ହେଉଛି— ନଗାଧିରାଜ ହିମାଳୟଙ୍କ କନ୍ୟା—ଏଠି ଗୋପାଳୁଣୀ ହୋଇ ଗୋସେବା କରୁଛି । କୁହ ତୁମର ଯଦି ପ୍ରୟୋଜନ ଅଛି ଗୋରସ ?

କାର୍ତ୍ତି—ଗୋରସ ! ହା—ହା—ହା···

ପାର୍ବତୀ—ହସିଲ ଯେ ?

କାର୍ତ୍ତି—ଗୋରସ ତ ପ୍ରୟୋଜନ ନାହିଁ; ଅନ୍ୟ କିଛି ରସର ପ୍ରୟୋଜନ ଅଛି ।

ପାର୍ବତୀ—ଆଉ କି ରସ ?

କାର୍ତ୍ତି—ତୁମର ପରିଚୟ ଯାହା ହଉନା କାହିଁକି. ତୁମେ ରୂପସୀ ତରୁଣୀ । ଆଉ ଆମେ—ରୂପବାନ୍, ଗୁଣବାନ୍ ସୁନ୍ଦର ସୁପୁରୁଷ । ଆମର ଇଙ୍ଗିତ ତୁମେ ବୁଝିପାରିଲ ନାହିଁ ?

( ଗୀତ )

ଭ୍ରୂଲତା ନଚାଇ ବାରେ କଟାକ୍ଷରେ ଗୃହ୍ନି
ସୁଧାରସ ତୁମ ଆଖିପତାରୁ ଝରାଅ
ଆମ୍ଭେ କାର୍ତ୍ତି—ବାସ ଗୋ
ହେବୁ ତୁମ ଚରଣର ଦାସ ଗୋ । ୧ ।

ଅଧରପରେ ଅଧର କଣ୍ଠତରେ ଥାପି
ସଞ୍ଚିତ ମଧୁକଣିକା ଧୀରେ ଧୀରେ ଗୁପି
ମୃଦୁ ମନ୍ଦ ହସ ଗୋ
ଝରୁ ସେ ଅଧରୁ ମଧୁରସ ଗୋ । ୨ ।

ଏ ଲବଙ୍ଗଲତା ସମ ତମ ଅଙ୍ଗଲତା
ନୂପୁର ନିକ୍ୱଣ ତାଳେ ଗୃଜ ତନୁଲତା
ରଚ ନୃତ୍ୟ ଗସ ଗୋ
ଶ୍ରୀଅଙ୍ଗୁ ଝରାଇ ଲସ୍ୟ ରସ ଗୋ । ୩ ।

ଦୈତ୍ୟରାଜସୁତ ଆମ୍ଭେ ହୋଇ ଯୁକ୍ତପାଣି
ଅଳ କରୁ ବନସ୍ଥଳୀ ତେଜ ବନରାଣୀ
ଆମ୍ଭ ସଙ୍ଗେ ଆସ ଗୋ
(ଆମ୍ଭ) ରାଣୀହଂସପୁରେ କର ବାସ ଗୋ । ୪ ।

ପାର୍ବତୀ—ତୁମର ଭ୍ରମ ହେଉଛି କୀର୍ତ୍ତି-ବାସ !

ବାସ—ଆମେ ତ ସେହି କଥା କହୁଚୁ । ତୁମକୁ ଦେଖିବାବେଳଠୁଁ ଆମର ଦୃଷ୍ଟି-ବିଭ୍ରମ ଘଟିଛି ।

ପାର୍ବତୀ—ନା, ମୁଁ ତୁମ ଦୃଷ୍ଟି କଥା କହୁନାହିଁ । ମୁଁ କହୁଚି—ତମର ମନ୍ତବ୍ୟଭ୍ରମ ଘଟିଛି । ତୁମର ପାତ୍ର-ଅପାତ୍ର ଜ୍ଞାନ ନାହିଁ । ମୁଁ ଏକାକିନୀ ବିଦେଶିନୀ ନାରୀ—ମୋର ପରିଚୟ ତୁମ ନିକଟରେ ଅଜ୍ଞାତ । ଅଥଚ ତୁମେ ଗୃହୁଁଚ···

କୀର୍ତ୍ତି—ଆମେ ଗୃହୁଁଚୁ ଆମେ ହେବୁ ତୁମ ଚରଣର ଦାସ ।

ପାର୍ବତୀ—ମୋ ଚରଣ ତ ଦୂରର କଥା, ମୋ ଚରଣଚିହ୍ନ ସୁଦ୍ଧା ତୁମେ ସ୍ପର୍ଶ କରିପାରିବ ନାହିଁ ।

ବାସ—ଗୋପାଳିନୀ !

ପାର୍ବତୀ—ଜନ୍ମ ତୁମର ଉଚ୍ଚ କୁଳରେ ହୋଇପାରେ, କିନ୍ତୁ ବୃତ୍ତି ତମର ନୀଚ । ତୁମେ ଲମ୍ପଟୀ, କାମୁକ—ସୁକୁରୁଷ ।

କୀର୍ତ୍ତି—ଜିହ୍ୱା ସଂଯତ କର ବିଦେଶିନୀ !

ପାର୍ବତୀ— ଜନ୍ମାଠାରୁ ଚଳପା ପର୍ଯ୍ୟନ୍ତ ଯିଏ ଅସଂଯତର ପ୍ରତିମୂର୍ତ୍ତି, ତା'ଠାରୁ କି ସଂଯମ ଶିକ୍ଷା ମୁଁ ଲଭ କରିବ ?

କାର୍ତ୍ତି— ତୁମ କଥା ମୁଁ ମାନନେଲି ଗୋପାଳମା—ଆମେ କୁପୁରୁଷ, କିନ୍ତୁ ଆମେ କାପୁରୁଷ ନୋହୁଁ । ଆମେ ଅସୁରଜାତି, ଆମେ ଦୁଷ୍ଟ ହବାକୁ ଚାହିଁଲେ, ସ୍ୱାଠୁଁ ବଳି ସହସ୍ର ଗୁଣ ଦୁଷ୍ଟବୁଦ୍ଧିର ପରିଚୟ ଆମେ ଦେଇପାରିବୁ । ଏପର୍ଯ୍ୟନ୍ତ ଆମେ ତୁମକୁ ହାତ ପାତି ଭିକ୍ଷା ମାଗୁଥିଲୁ । ମାତ୍ର ଆଜ ଭିକ୍ଷା ନୁହେଁ । ଯଦି ତୁମେ ଆମ କଥାରେ ରାଜି ନ ହୁଅ, ତେବେ ଆମେ ବଳ ପ୍ରୟୋଗ କରି ତୁମକୁ ଅପହରଣ କରିନେବୁ ।

ପାର୍ବତୀ—(ସ୍ୱଗତଃ) ଜଣାପଡ଼ୁଛି ଏମାନେ କଠୋର କରିବେ, ବଳ ପ୍ରୟୋଗ କରିବେ । ମାୟାବଳରେ ଏମାନଙ୍କୁ କିଛି କାଳ ଅଚେତ କରାଇ ମୁଁ ଏ ସ୍ଥାନ ଛାଡ଼ି ଚାଲିଯିବ ।

ବାସ—କ'ଣ ଆଉ ଭାବୁଚ ଗୋପାଳମା ?

ପାର୍ବତୀ—ମୁଁ ଯାହା ଭାବୁଚି ଏ କ୍ଷଣକ ଭିତରେ ତାହା ତୁମେ ଜାଣିପାରିବ ।

( ପାର୍ବତୀଙ୍କ ମାୟାବଳରେ ଦୁହେଁ ଅଚେତ ହୋଇପଡ଼ିଲେ )

କାର୍ତ୍ତି, ବାସ — ଆଃ !

ପାର୍ବତୀ—ହଁ, ଦୁହେଁ ଅଚେତ ହେଇଗଲେଣି । ମୁଁ ଯାଏଁ, ଶୂନ୍ୟମାର୍ଗରେ ଅବସ୍ଥାନ କରିବ ।

(ପାର୍ବତୀ ଅଦୃଶ୍ୟ ହୋଇଗଲେ । କିଛି କ୍ଷଣ ପରେ ଏ ଦୁହେଁ ଚେତନା ଲଭକରି ଉଠିଲେ । )

କାର୍ତ୍ତି— ଆଃ ! ବାସ !

ବାସ—କଣ ହେଲା ଭାଇ ?

କାର୍ତ୍ତି—ମୁଁ ଜାଣିପାରୁନ କଣ ହେଲା ? ଏତେବେଳ ଯାଏଁ ଆମେ ଦୁହେଁ କୋଉଠି ଥିଲେ ?

ବାସ—ଏଇଠି ତ ! ଏଇ ସେଇ ଚମ୍ପାଗଛ !

କାର୍ତ୍ତି—ହଁ, ଠିକ୍ । ଆମେ ଏହି ସ୍ଥାନରେ ହିଁ ଥିଲେ । ସେ ଗୋପାଳମା କାହିଁ ? କୁଆଡ଼େ ଗଲା ?

ବାସ—କଣ୍ଠ ବୁଝିହଉନ । ଧଉରେ ସେ କଣ ମାୟାବନ—ମାୟା ବଳରେ କୁଆଡ଼େ ଉଭେଇଗଲା ?

କାର୍ତ୍ତି—ନା, ସେ ଆମକୁ ଠକଚ । ଏଇଠଂ କୋଉଠେ ସେ ଛପି ରହିଚ । ଆଜ ଆଉ ବେଳ ନାହିଁ, ଆଜ ଉଆସକୁ ଫେରିଯିବା, ପୁଣି ଆସି ତାକୁ ଖୋଜିବା । ଏଥର—ଏଥର କନ୍ତୁ ଆମ ହାତରୁ ତା'ର ମୁକ୍ତି ନାହିଁ ।

[ କାର୍ତ୍ତି-ବାସ ଦୁହିଁଙ୍କର ପ୍ରସ୍ଥାନ । ପାବଣ୍ଣ ପୁଣି ଆବିର୍ଭୂତା ହେଲେ ]

ପାବଣ୍ଣ—ଏଇଠି ଏ ଶୂନ୍ୟମାର୍ଗରେ ରହି ପ୍ରଭୁଙ୍କୁ ସ୍ମରଣ କରେଁ ।

ଓଁ ନମଃ ଶିବାୟ
ଓଁ ନମଃ ଶିବାୟ
ଓଁ ନମଃ ଶିବାୟ

[ କଣ୍ଠ କ୍ଷଣ ପରେ ବଂଶୀସ୍ୱନ ଶୁଭିଲା । ]

ପାବଣ୍ଣ—ବଂଶୀସ୍ୱନ ! ଏ ସ୍ୱନ ଏଠିକି କାହୁଁ ଆସିଲା ? ଏ ପୀଠକୁ ମୁଁ ଆସିଲାଦନୁ ଏଠି ବଂଶୀସ୍ୱନ ତ କେବେ ଶୁଣି ନଥିଲି ? ପ୍ରଭୁଙ୍କୁ ମୁଁ ସ୍ମରଣ କଲି । ଉତ୍କଣ୍ଠାରେ ବସିରହିଚ ତାଙ୍କ ଡମ୍ବରୁନାଦ ଶୁଣିବ ବୋଲି; ମାତ୍ର ଏ ବଂଶୀସ୍ୱର ? ତେବେ କଣ କାର୍ତ୍ତି-ବାସ ଦୁହେଁ ମତେ ଆକୃଷ୍ଟ କରିବା ପାଇଁ ବଂଶୀ-

ବାଦନ କରୁଚନ୍ତି ।···(ଚିକଏ ରହି) ଏଇ ତ, ଏଇ ସେ ବଂଶୀବାଦକ ଏଣେ ଆସୁଚନ୍ତି । ନା—ଇଏ ଙ୍କର୍ତ୍ତି-ବାସ ନୁହନ୍ତି । ସେମାନେ ଦୁଇଭାଇ—ଇଏ ଯେ ଏକକ ମୂର୍ତ୍ତି । ···ଆହା, କି ସୁନ୍ଦର ମୁଖକାନ୍ତି—ଲାବଣ୍ୟଭରା ଇନ୍ଦ୍ର-ନୀଳମଣି-ରୂପ—କଟୀରେ ପୀତାମ୍ବର—ମଥାରେ ମୟୂରପୁଚ୍ଛ—ଓଠରେ ବଇଁଶୀ ।

[ ଗୋକୁଳପତିବେଶରେ ଶିବ ଆସିଲେ । ]

ଶିବ—ଦେବୀ !

ପାର୍ବତୀ—(ଆଶ୍ଚର୍ଯ୍ୟରେ) ଦେବୀ !!

[ ପାର୍ବତୀ ଶିବଙ୍କୁ ଚିହ୍ନି ପାରୁନଥାନ୍ତି ]

ଶିବ—ଚିହ୍ନି ପାରୁନ ଦେବୀ ?

ପାର୍ବତୀ—ନା ଦେବ, ମୋତେ ପରିଚୟ ଦିଅ ।

ଶିବ—ଦେବି—ତା' ପୂର୍ବରୁ ମୋ ପ୍ରଶ୍ନର ଉତ୍ତର ଦିଅ ।

ପାର୍ବତୀ—କି ପ୍ରଶ୍ନ ?

ଶିବ—ତୁମେ କାଶୀକ୍ଷେତ୍ରର ସେଇ ଗୋପାଳିନୀ ତ ?

ପାର୍ବତୀ—କାଶୀକ୍ଷେତ୍ରର ଗୋପାଳିନୀ ? ଅବଶ୍ୟ ମୁଁ କାଶୀକ୍ଷେତ୍ରର ହରପ୍ରିୟା ପାର୍ବତୀ—ଏଠି ଗୋପାଳିନୀ ବେଶରେ ଅଛି ।

ଶିବ—ତୁମେ ଗୋକୁଳର ଗୋପାଳିନୀବେଶ ଧାରଣ କରିଚ । ମୁଁ ଯଦି ସେଇ ଗୋକୁଳପତିବେଶରେ ଏଠିକି ଆସିନଥାନ୍ତି ତୁମ ମନରେ ଦୁଃଖ ହୋଇନଥାନ୍ତା !

ପାର୍ବତୀ—ପ୍ରଭୁ ! ତୁମେ ଆସିଚ ପ୍ରଭୁ ! ମୋତେ କ୍ଷମା କର, ମୁଁ ଚିହ୍ନି ପାରି ନଥିଲି । ମୋର ପ୍ରଣାମ ଗ୍ରହଣ କର ସ୍ୱାମୀ !

[ ପ୍ରଣାମ କଲେ ]

ଶିବ—ଉଠ ଦେବୀ, ଉଠ । ତୁମ ଏକାମ୍ର ରହଣି, ଏଇ ଏକାମ୍ରପୀଠ କଥା ମତେ କୁହ ।

ପାର୍ବତୀ—ଏ ପୀଠକୁ ଆସି ମୁଁ ଧନ୍ୟ ହୋଇଛି ପ୍ରଭୁ ! ତୁମର ଅଦ୍ୱିତୀୟ ସ୍ଥଳୀ ଏ ପୀଠ । ମୋର ଏ ବେଶରେ ମୁଁ ଗୋଧନ ପାଳନ କରି, ନିତ୍ୟପ୍ରତି ଗୋକ୍ଷୀରରେ ତୁମର ଜ୍ୟୋତିଃବିଗ୍ରହ ଭୁବନେଶ୍ୱରଙ୍କୁ ସ୍ନାନ କରାଇ ମୁଁ ମହାନନ୍ଦରେ ଥିଲି । ଭୁବନେଶ୍ୱରଙ୍କ ପୂଜା-ଅର୍ଚ୍ଚନାରେ ମୋ ଆନନ୍ଦର ସୀମା ନଥିଲା । ମାତ୍ର···

ଶିବ—ମାତ୍ର ଏ ଆନନ୍ଦରେ ବାଧା ଦେଲେ କୀର୍ତ୍ତି-ବାସ !

ପାର୍ବତୀ—ତୁମେ···ତୁମେ ତେବେ ସବୁ ଜାଣ ପ୍ରଭୁ ?

ଶିବ—ସବୁ ଜାଣିଛି ଦେବୀ । ମୋର ତୃତୀୟ ନେତ୍ରରେ ମୁଁ ସେମାନଙ୍କୁ ଦେଖିଛି ।

ପାର୍ବତୀ—କିଏ ଏଇ କୀର୍ତ୍ତି-ବାସ ? ସେ ଦୁହେଁ କେବଳ ମୋର ଶତ୍ରୁ ନୁହନ୍ତି—ଏ ଶିବକ୍ଷେତ୍ର ଏକାମ୍ରପୀଠର ମଧ୍ୟ ସେମାନେ କଳଙ୍କ । କିପରି ଏ କଳଙ୍କ ଦୂର ହେବ, କିପରି ସେମାନେ ଶାସ୍ତି ଭୋଗିବେ ?

ଶିବ— (ଗୀତ)

ଏଇ କୀର୍ତ୍ତି-ବାସ
ଦୁହେଁ କରିଲେଣି ମୃତ୍ୟୁଗ୍ରାସ ॥୦॥
ବିଦର୍ଭ ନଗର ଦ୍ରୁମିଳ ଅସୁର
ନୃପତିର ଦୁଇ ସୁତ
ପିତା ପୁଣ୍ୟ କର୍ମ ଭୁଲିଲେ ଅଧମ
ପାପଙ୍କେ କରି ବାସ । ୧ ।

ଲଭିଚନ୍ତି ବର  ଏ ଦୁଇ କୁମର
ସଂଗ୍ରାମେ ନୋହିବେ ହତ
ନ ଭେଦିବ ଅସ୍ତ୍ର,  ପୁରୁଷ ହସ୍ତରେ
ନୋହିବେ ପୁଣି ସେ ନାଶ । ୨ ।

ତୁମେ ଯୋଗମାୟା  କର ଏଥି ମାୟା
ସ୍ମର ମନେ ମହାମନ୍ତ୍ର
ତୁମ ବୁଦ୍ଧିବଳେ  କଳ-କଉଶଳେ
କରିବ ତାଙ୍କୁ ବିନାଶ । ୩ ।

ପାର୍ବତୀ—ଏ କଣ କହୁଚ ପ୍ରଭୁ ? ସେମାନଙ୍କ ମୃତ୍ୟୁ ପୁରୁଷହସ୍ତରେ ନୁହେଁ, ନାରୀହାତରେ ! ପୁଣି ସଂଗ୍ରାମରେ ନିହତ ହେବେ ନାହିଁ କି ତାଙ୍କ ଦେହରେ ଅସ୍ତ୍ର ଭେଦିବ ନାହିଁ ? ମୋ ବୁଦ୍ଧି-ବଳରେ, ମୋ କଳ-କୌଶଳରେ ମୁଁ କେମିତି କଣ କରିପାରିବି ?

ଶିବ—ତା' ଛଡ଼ା ଆଉ ଅନ୍ୟ ଉପାୟ ନାହିଁ ଦେବୀ ! କୀର୍ତ୍ତି-ବାସଙ୍କ ମରଣଭେଦ ମୁଁ ତୁମକୁ କହିଲି; କିନ୍ତୁ ଉପାୟ ତୁମେ ସ୍ଥିର କରିବ ।

ପାର୍ବତୀ—ମୁଁ ପାରିବି ତ ପ୍ରଭୁ ?

ଶିବ—ତୁମେ ଚଣ୍ଡ ମୁଣ୍ଡ ମହିଷାସୁରକୁ ବଧ କରିଚ—ତୁମେ ମହାମାୟା ଯୋଗମାୟା ଆଦ୍ୟାଶକ୍ତି ନାରୀ । ତୁମେ ହିଁ ପାରିବ ପାର୍ବତୀ, କୀର୍ତ୍ତି-ବାସର ଦୌରାତ୍ମ୍ୟରୁ ତୁମେ ହିଁ ଏ ପବିତ୍ର ଏକାମ୍ର ଭୂମିକୁ ରକ୍ଷାକରିବ, ଏ ତ୍ରିଭୁବନ ରକ୍ଷା କରିବ ।

ପାର୍ବତୀ—ବେଶ୍ ! ତୁମର ଆଜ୍ଞା ପାଳନ କରି, ତୁମର ଆଶୀର୍ବାଦକୁ ସମ୍ବଳ କରି ମୁଁ କର୍ତ୍ତବ୍ୟ ସମ୍ପାଦନ କରିବି ।

ଶିବ—ତୁମଦ୍ୱାରା ଅପମାନିତ ହୋଇ ସେ ଦୁହେଁ ଫେରିଯାଇଛନ୍ତି । ପ୍ରତିଶୋଧ ନେବାକୁ ସେମାନେ ନିଶ୍ଚୟ ଆସିବେ ।

ପାର୍ବତୀ—ସେଇ ଚମ୍ପାଗଛମୂଳେ ମୁଁ ସେମାନଙ୍କ ଅପେକ୍ଷାରେ ରହୁଚି । ତୁମେ ଯାଅ ପ୍ରଭୁ ! ଶିଖର ଉପରେ ବିଶ୍ରାମ ନିଅ ।

[ଶିବଙ୍କ ପ୍ରସ୍ଥାନ । ପାର୍ବତୀ ଚମ୍ପାଗଛମୂଳରେ ଯାଇ ବସିଲେ । କିଛିକ୍ଷଣ ପରେ ଆସିଲେ କାଳି ଆଉ ବାସ ]

କାଳି—ବାସ !

ବାସ—ଭାଇ !

କାଳି—ମୋର ଆଶଙ୍କା ହେଉଥିଲା ସେଇ ସୁନ୍ଦରୀ ବିଦେଶିନୀ ଆମ ଭୟରେ ବନର ଅପର ପ୍ରାନ୍ତରେ କୋଉଠି ଲୁଚି ରହିଥିବ ।

ବାସ—ମାତ୍ର କାହିଁ ? ବନର ସେ ପ୍ରାନ୍ତ ତ ଆମେ ଭନ୍ନ ଭନ୍ନ କରି ଖୋଜିଲେ, ତାର ସନ୍ଧାନ ମିଳିଲା ନାହିଁ ।

କାଳି—ତାର ସେ ପୂର୍ବ ସ୍ଥାନ—ସେଇ ଚମ୍ପାଗଛ ?

ବାସ—ମୋର ବିଶ୍ୱାସ ନାହିଁ ସେ ସ୍ଥାନରେ ସେ ଏପର୍ଯ୍ୟନ୍ତ ଥିବ ।

କାଳି—ତେବେ ବି ଥରେ ଯାଇ ଦେଖିବା !

ବାସ—(ଅଳ୍ପ ଦୂରରୁ) ଭାଇ ! ସେଇ ଗୋପାଳମା···ସେଇ ଚମ୍ପାଗଛ !

କାଳି—ହାଃ-ହାଃ-ହାଃ । (ପାଖକୁ ଆସି) ବାସ ! ତୁ ସେ ପାଖରେ ରହ, ମୁଁ ଏ ପାଖରେ ରହୁଚି । ପଳାଇ ଯିବାର ସେମିତି ବାଟ ନଥିବ ।

ବାସ—ରହିଲି ଭାଇ !

କର୍ତ୍ତି—ହୁଁ, ଗୋପାଳମା ! ଆଜ ଏକାଠିକେଳକେ ମାରବ ଯେ ?
କ'ଣ ଜଭ ତାକୁ ଶୁଖି ଅଠା ହେଇଗଲାଣି ?

ବାସ—କଣ କହୁଥିଲୁ ତୁ ? ଆମର ମତ ବିଭ୍ରମ ଘଟିଚ ?

କର୍ତ୍ତି—ଆମେ ଲମ୍ପଟ, କାମୁକ, କୁପୁରୁଷ ?

ବାସ—ତୋର ଚରଣଚିହ୍ନ ଦୁଃଖା ଆମେ ସ୍ପର୍ଶ କରିପାରିବୁ ନାହିଁ ?

କର୍ତ୍ତି—ଆଉ ବର୍ତ୍ତମାନ ? ଥରେ ସିନା ଠକି ଗୁଲଗଲୁ—
ବର୍ତ୍ତମାନ ?

ପାର୍ବତୀ—ବର୍ତ୍ତମାନ କ'ଣ କରିବ ତୁମେ ?

କର୍ତ୍ତି }
ବାସ } —(ଅଟ୍ଟହାସ୍ୟ)

କର୍ତ୍ତି—କଣ କରିବୁ ?

(ଗୀତ)

ଆଲୋ ଗୋପାଳମା ଗରବିଣୀ ନାରୀ
ଗରବ ତୋହର ଫଟାଇବୁ
ତୋ ଅଙ୍ଗେ ଅନଙ୍ଗ କାମଜ୍ୱାଳା ନୁହେଁ
ବିଷଜ୍ୱାଳା ଏବେ ଛୁଟାଇବୁ । ୦ ।
ଗୁହିଁଥିଲୁ ତୋର ଚରଣେର ଦାସ
ହୋଇ ରହିଥାନ୍ତୁ ଆମେ କର୍ତ୍ତି-ବାସ
କଥା ନେଉଟିଲ, ତୋ ମଥାକୁ ଏବେ
ଆମ ପାଦତଳେ ଲୋଟାଇବୁ । ୧ ।
ବନଚାରିଣୀ ତୋ ହୀନ ବାସଯୋଗ
ତୁ କାହୁଁ ବୁଝିବୁ ରାଜସିକ ଭୋଗ
ଉଆସରେ ନୁହେଁ ଉଆସ ବାହାରେ
ଦାସୀପଣେ ତୋତେ ଖଟାଇବୁ । ୨ ।

କନ୍ଦର୍ପ ସୁନ୍ଦର ରୂପ ନ ଚହ୍ନିଲୁ
ଶୂର-ବୀର-ରାଜପୁତ୍ରେ ଧିକ୍କାରିଲୁ
ମୋତିମୂଲ୍ୟ କାହୁଁ ମର୍କଟ ବୁଝିବ
ତୋ ଭାଗ୍ୟ ପଥର ଗୋଟାଇବୁ । ୩ ।

କୀର୍ତ୍ତି—ଏବେ ବୁଝିଲୁ ତ ଆମେ କ'ଣ କରିବୁ ? ତୋ ଗର୍ବ ଚୂନା ହୋଇଯିବ । ତୋର ଏ ରୂପ ଆଉ ରହିବ ନାହିଁ । ଯୌବନ ମାଟିରେ ମିଶିଯିବ ।

ପାର୍ବତୀ—(ମଧୁର ଗଳାରେ) ପ୍ରିୟତମ !

କୀର୍ତ୍ତି—(ଆଶ୍ଚର୍ଯ୍ୟରେ) ପ୍ରିୟତମ !!

ବାସ—ଭାଇ, ଏଠି କିଏ କାହାକୁ କହିଲା ପ୍ରିୟତମ ?

କୀର୍ତ୍ତି—ଗୋପାଳମଣି !

ପାର୍ବତୀ—(ଅଳ୍ପ ମଧୁର ହସ)

କୀର୍ତ୍ତି—(ଖୁସିରେ) ତା'ହେଲେ···ତା' ହେଲେ ତୁମେ କହିଚ ! ମାତ୍ର ଏଠି ତ ଆମେ ଦୁହେଁ ଅଛୁ—କାହାକୁ ତୁମେ କହିଲ ?

ପାର୍ବତୀ—ମୁଁ ଆଉ ପାରିବି ନାହିଁ । ମୋର ଦୁଇ ପାଖରେ ଦୁଇ ବୀର ପୁରୁଷ, ବର ପୁରୁଷ, କନ୍ଦର୍ପ ସୁନ୍ଦର ରାଜପୁତ୍ର ଥାଉଁ ଥାଉଁ ମୁଁ ଆଉ କାହାକୁ କହିବି ପ୍ରିୟତମ ?

କୀର୍ତ୍ତି—ଶୁଣିଲୁଟି ବାସ ? ମୁଁ ସେତେବେଳେ କଣ କହୁଥିଲି ?

ବାସ—ହଁ ଭାଇ, ସେତେବେଳେ ତୁମେ କହୁଥିଲ—ମୁଁ ମଧ କହୁଥିଲି । ପଛକୁ ସବୁ ଓଲଟପାଲଟ ହୋଇଗଲା ।

କୀର୍ତ୍ତି—ଅଚ୍ଛା, ଗୋପାଳମଣି !

ପାର୍ବତୀ—କୁହ···

କାନ୍ତି—ଏବେ ତ ଆମ ଭିତରେ ଗୋପନ କିଛି ନାହିଁ । ସତ କୁହ, ତୁମେ ଆମକୁ ଠକିଲ କାହିଁକି ?

ପାବନ୍ତ—ମୁଁ ଠକି ନାହିଁ ତ ।

ବାସ—ଆମକୁ ଛାଡ଼ିବେ ତୁମେ ବୁଲେଇ କୁଆଡ଼େ ଚାଲିଗଲ ?

ପାବନ୍ତ—ମୁଁ ପରୀକ୍ଷା କରୁଥିଲି ।

କାନ୍ତି—କାହାକୁ ? ଆମକୁ ?

ପାବନ୍ତ—ନା—ମୋର ଭାଗ୍ୟକୁ ।

ବାସ—ତମ ପରି ନାରୀରତ୍ନର ପୁଣି ଭାଗ୍ୟପରୀକ୍ଷା କ'ଣ ?

ପାବନ୍ତ—ଅତୀତରେ ମୁଁ ଠକିଯାଇଛି । ସେଇଥି ପାଇଁ ଏ ଭାଗ୍ୟ-ପରୀକ୍ଷା । ସେଇଥି ପାଇଁ ଉପରେ ମନରେ ଧିକ୍କାର କରି ତମ ବାଟ ଜଗି ବସିଥିଲି । ଯଦି ମୁଁ ଭାଗ୍ୟହୀନା ହୋଇଥାନ୍ତି, ତୁମେ ଆଜି ମୋ ମୁହଁ ଚାହିଁନଥାନ୍ତ । କିନ୍ତୁ ମୁଁ ଭାଗ୍ୟବତୀ ବୋଲି ତୁମେ ଦୁହେଁ ମତେ ଖୋଜି ଖୋଜି ଏଠିକି ଆସିଲ । ମୁଁ ତୁମ ଦର୍ଶନ ଲାଭ କଲି ।

କାନ୍ତି—ହାୟ, ହାୟ—ତୁମେ କେବଳ ରୂପବତୀ ନୁହଁ, ତୁମେ ବୁଦ୍ଧିମତୀ । କେବଳ ବୁଦ୍ଧିମତୀ ନାରୀମାନେ ହିଁ ଏଭଳି କଥା କହିଥାନ୍ତି । ଏବେ ତୁମ ଶ୍ରୀମୁଖରୁ ଆଜ୍ଞା ହେଉ ଗୋପାଳିନୀ !

ପାବନ୍ତ—ଆଜ୍ଞା ତୁମେ ଦେବ କାନ୍ତି-ବାସ—ମୁଁ ଆଜ୍ଞା ପାଳିବି । ମୁଁ ହେବି ତୁମ ଉଆସର ରାଣୀ ।

ବାସ—ଆଃ—ଏ ଚମ୍ପାଫୁଲର ବାସ ପାରିଜାତର ମହକକୁ ବଳିଗଲା ।

କାନ୍ତି—ଏ ପବନ ତ ପବନ ନୁହେଁ—ଶୀତଳ ଚନ୍ଦନର ପ୍ରଲେପ ।

ବାସ—ଏବେ ଆସ ଦେବୀ, ଉଆସକୁ ଯିବା ।

କାନ୍ତି—ତୁମର ଉଆସଯାତ୍ରା ପାଇଁ ଆମର ଆଜ୍ଞା ମାତ୍ରକେ ବାଜା, ବାଜଣା, ରଥ, ରଥୀ, ଶିବିକା···

ପାର୍ବତୀ—ମୁଁ ଜାଣେ, ସବୁ ଆସି ଉପସ୍ଥିତ ହେବ । ମହା ଆଡ଼ମ୍ବରରେ ମୁଁ ଉଆସ ଯାତ୍ରା କରିବି । ମାତ୍ର ଗୋଟିଏ ସର୍ତ୍ତରେ···

କାର୍ତ୍ତି—ତୁମର ଲକ୍ଷେ ସର୍ତ୍ତ ଆମେ ପୂରଣ କରିବୁ । କୁହ କ ସର୍ତ୍ତ ?

ପାର୍ବତୀ—ମୁଁ ଏକ କଠୋର ବ୍ରତ ପାଳନ କରିଛି । ଯିଏ ମୋର ସେଇ ବ୍ରତ ପୂରଣ କରିବ, ମୁଁ ତାକୁଇ ବିବାହ କରିବି । ଆଉ ମୁଁ ଜାଣେ, ତୁମେମାନେ ଏଥି ପାଇଁ ଉପଯୁକ୍ତ । ସେ ବ୍ରତ ପୂରଣର ଶକ୍ତି ଆଉ ସାମର୍ଥ୍ୟ ତୁମର ରହିଛି ।

କାର୍ତ୍ତି—ଧନ୍ୟ, ଧନ୍ୟ ଦେବୀ ! ତୁମେ ଉଚିତ କଥା କହିଁଛ । ତୁମ ପାଇଁ ଏ ତ୍ରିଭୁବନରେ ଆମର କୌଣସି କର୍ମ କଠୋର ନୁହେଁ । ଏବେ କୁହ ତୁମ ବ୍ରତକଥା ।

ପାର୍ବତୀ— (ଗୀତ)

ମନ ଧ୍ୟାନ ଦେଇ ଶୁଣ ହେ କାର୍ତ୍ତି କୁମାର
ଶୁଣ ହେ କାର୍ତ୍ତି କୁମାର
ଶୁଣ ବାସ ମୋ କାହାଣୀ ମୋ ବ୍ରତ ବେଭାର
ଠିକେ କହୁଛି ବୁଝାଇ
ବୁଝିବ ମୋ ମନକଥା ତୁମେ ବେନି ଭାଇ
ଠିକେ କହୁଛି ବୁଝାଇ । ୧ ।

ଦେଖୁଛ ଏ ପୁଣ୍ୟ ପୀଠ ଏକାମ୍ରକାନନ
ପୀଠ ଏକାମ୍ରକାନନ

ଆଢ଼ଧାର୍ଦ୍ଧ ପଞ୍ଚକୋଶ ଅଟେ ଆୟତନ
ଏଥି ପୂରବ ମୋ ବ୍ରତ
ସାକ୍ଷୀ ଯକ୍ଷ ରକ୍ଷ ନର ଦେବତା ଜାଗ୍ରତ
ଏଥି ପୂରବ ମୋ ବ୍ରତ । ୨ ।
କଏ ସେ ପୁରୁଷ କୁହ ତା' କାନ୍ଧେ ଚରଣ
ରଖି ତା କାନ୍ଧେ ଚରଣ
ହୋଇବ ମୁଁ ଛୁଡ଼ା, ସେହୁ ଭ୍ରମିବ ଏ ବନ
ଏକ ଶ୍ୱାସେ ତିନବାର
ବ୍ରତ ହେବ ପୂର୍ଣ୍ଣ ମୁହିଁ ହେବି ପତ୍ନୀ ତାର
ଏକ ଶ୍ୱାସେ ତିନବାର । ୩ ।

ପାର୍ବତୀ—ଏଇ ମୋର ବ୍ରତ । ମୁଁ କାନ୍ଧରେ ଠିଆ ହୋଇଥିବା ପର୍ଯ୍ୟନ୍ତ ମୋ ଅଙ୍ଗ ସ୍ପର୍ଶ କରିବ ନାହିଁ କି ମଥା ଟେକି ଉପରକୁ ଚାହିଁବ ନାହିଁ । ତେବେ ଯାଇ ମୋ ବ୍ରତ ପୂର୍ଣ୍ଣ ହେବ ।

ଲାଠି—ଇଏ ତ ଅତି ଆନନ୍ଦର କଥା ହେଲା ! ପ୍ରଥମରୁ ହିଁ ଆମେ କହିଚୁ, ଆମେ ହେବୁ ତୁମ ଚରଣର ଦାସ । ବର୍ତ୍ତମାନ ତୁମେ ଆମ କାନ୍ଧରେ ଚରଣ ଥୋଇ ଛୁଡ଼ାହେବ, ଆମେ ତମକୁ ବହନ କରିବୁ । ଅତି ଆନନ୍ଦର କଥା ।

ପାର୍ବତୀ—କିନ୍ତୁ ମନେରଖ—ଏ ଏକାମ୍ରର ଆୟତନ ହେଉଚି ପାଞ୍ଚ-କୋଶ । ଏ ପାଞ୍ଚକୋଶ ମଣ୍ଡଳ କାନ୍ଧରେ ରଖି ତୁମେ ଥରେ ନୁହେଁ, ତିନଥର ଭ୍ରମଣ କରିବ ।

ବାସ—ପାଞ୍ଚକୋଶ ! ଛାର ପାଞ୍ଚକୋଶ ! ! ତୁମକୁ କାନ୍ଧରେ ରଖି ଆମେ ପାଞ୍ଚଶହ କୋଶ ଆୟତନ ଏକାନିଶ୍ୱାସରେ ତିନ-ଶହ ଥର ଭ୍ରମି ଆସିବୁ । ପାଦେ ବଢ଼େଇଲେ ପରା ଆମେ କୋଶେ ମାଡ଼ିଯିବୁ ।

ପାର୍ବତୀ—ପ୍ରକୃତରେ ତୁମେ ବୀର । ମହାବୀରଠୁ ବଳି ମହା—ମହାବୀର ।

କାର୍ତ୍ତି—ମାନ ଦେବୀ ! ଆମର ଗୋଟିଏ ବ୍ରତ ଅଛି ।

ପାର୍ବତୀ—(ଉତ୍ସାହରେ) କି ବ୍ରତ !

କାର୍ତ୍ତି—ଆମେ ଯେତେବେଳେ ବିବାହ କରିବୁ, ଆମେ ଦୁହେଁ ଗୋଟିଏ ସ୍ତ୍ରୀକୁ ବିବାହ କରିବୁ । ଆମେ ଦୁଇ ସ୍ୱାମୀ, ଆମର ଗୋଟିଏ ସ୍ତ୍ରୀ ।

ପାର୍ବତୀ—ଓ, ତୁମେ ଦୁଇ ଭାଇ ମିଳି ବିବାହ କରିବ ?

ବାସ—ହଁ, ଦେବୀଙ୍କର କଣ ସେଥିରେ ଆପତ୍ତି ଅଛି ?

ପାର୍ବତୀ—ନା-ନା, ସେ ବହୁତ ଭଲ ଉଦ୍ଦେଶ୍ୟ । ମୁଁ ଆପତ୍ତି କରିବି କାହିଁକି ? ବରଂ ମୁଁ ଖୁସି ହେବି । ମୋର ଦୁଇ ସ୍ୱାମୀ । ଜଣକ ପାଖରେ ମୁଁ ଅଭିମାନ କଲେ ଆଉ ଜଣକ ମୋ ମାନଭଞ୍ଜନ କରିବ । ଜଣେ ମତେ ସ୍ୱର୍ଗପୁରୀ ଦର୍ଶନ କରାଇଲେ ଆଉ ଜଣେ ପାତାଳପୁରୀକୁ ନେବ । ଆଉ ଯେତେବେଳେ ମୋ ପାଇଁ ତୁମ ଦୁଇଜଣଙ୍କ ଭିତରେ କଳିକଜିଆ ହେବ, ମୁଁ ସେତେବେଳେ ଉଆସ ପଛପଟ ଫୁଲ ବଗିଚାରେ ଏକୁଟିଆ ବସି ଗୀତ ଗାଇବି । ଫଳରେ, ତୁମେମାନେ ଜାଣିବ ଯେ—ମୁଁ କାହାରି ପ୍ରତି ପକ୍ଷପାତ କରୁନାହିଁ । କଳି ତୁମର ଆପେ ଆପେ ଭାଙ୍ଗିଯିବ ।

କାର୍ତ୍ତି—ବାଃ-ବାଃ-ବାଃ ! କି ବୁଦ୍ଧି ! କି ବହୁତ ! କ୍ଷଣକୁ କ୍ଷଣ ତୁମେ ଆମର ମନକୁ କିଣିନେଉଚ ଦେବୀ !

ବାସ—ହଉ, ଏଥର ଆସ ଦେବୀ, ଆମ କାନ୍ଧରେ ପାଦ ରଖି ଛିଡ଼ା ହୁଅ । ଆମେ ପ୍ରସ୍ତୁତ ।

ପାର୍ବଣ—ଟିକଏ ରୁହ । କାନ୍ଧରେ ଛିଡ଼ାହେବା ପୂର୍ବରୁ ମୁଁ ଇଷ୍ଟ-ନାମ ସ୍ମରଣ କରିନିଏଁ । (ମନକୁ ମନ) ହେ ପ୍ରଭୁ ମହେଶ ! ହେ ଭୁବନେଶ୍ୱର ! ତୁମେ ମୋର ଇଷ୍ଟଦେବ । ତୁମକୁ ସ୍ମରଣ କରି ମୁଁ ତୁମରି ନିର୍ଦ୍ଦେଶ ପାଳନ କରୁଛି । (ପ୍ରକାଶ୍ୟେ) ହଁ, ଏବେ ମୁଁ ପ୍ରସ୍ତୁତ ।

କାର୍ତ୍ତି—ଆମେ ବସୁଚୁ ଦେଖା ! ତୁମେ ଏବେ ଆମ କାନ୍ଧରେ ଧୀରେ ପାଦ ରଖି ଛିଡ଼ାହୁଅ ।

[କାର୍ତ୍ତି ବାସ ଦୁହେଁ ବସିଲେ]

ପାର୍ବଣ—ଧୀରେ ପାଦ ରଖିବି ? କାହିଁକି ? ତମକୁ ବାଧିବ ?

କାର୍ତ୍ତି—ନା-ନା, ଆମକୁ ନୁହେଁ, କାଳେ ତମ ଶ୍ରୀଚରଣକୁ ବାଧିବ ।

ପାର୍ବଣ—(ହସି) ଆଚ୍ଛା, ଆଚ୍ଛା ।

[ପାର୍ବଣ ଦୁହିଁଙ୍କ କାନ୍ଧରେ ପାଦ ରଖି ଛିଡ଼ାହେଲେ ]

ବାସ—ଆମେ ତା'ହେଲେ ଉଠୁଚୁ ?

ପାର୍ବଣ—ଉଠ । ପ୍ରଥମେ ପୂର୍ବମୁଖ ହୋଇ ଚାଲ ।

କାର୍ତ୍ତି—ଭଲ କଥା । ଯାହା ତମର ଇଚ୍ଛା ··· (ଟିକଏ ରହି) ଦେଖା !

ପାର୍ବଣ—କ'ଣ ହେଲା ?

କାର୍ତ୍ତି—ତୁମେ ··· ତୁମେ ଆମ କାନ୍ଧରେ ଛିଡ଼ାହୋଇଚ ତ ?

ପାର୍ବଣ—ହଁ, ଛିଡ଼ାହୋଇଚି ତ ।

ବାସ—ଆମେ ଜାଣିପାରୁନୁ ।

ପାର୍ବଣ—ଜାଣିପାରୁନ ? ଏଇ ଦେଖ, ମୋ ହାତରେ ମୁଁ ଏ କେନ୍ଦୂବାଡ଼ି ଧରିଚି, ଦେଖିପାରୁଚ ?

କାର୍ତ୍ତି—ଆମ ଆଖିଆଗରେ ତୁମ କେନ୍ଦୁ ବାଡ଼ ଆମେ ଦେଖୁଚୁ ଯେ, ହେଲେ ତୁମ ଦେହ ଏତେ ଉଶ୍ୱାସ !! ଆମେ ଜାଣିପାରୁନୁ ଆମ କାନ୍ଧଉପରେ ତୁମ ପାଦ ଅଛୁ କ ଅଛୁ ଗୋଟାଏ ଫୁଲ ତୋଡ଼ା !

ପାର୍ବଣ—ଓ, ଏଇଆ ?

ବାସ—ତମକୁ କାନ୍ଧରେ ଛୁଡ଼ାକରାଇ ଆମ ମନ ଏତେ ଖୁସି ଯେ, ମନ ହଉଚ ଆମେ ନାଚ ନାଚ ଯିବୁ ।

ପାର୍ବଣ—ଭଲ କଥା । ନାଚ ନାଚ ଯାଅ ।

କାର୍ତ୍ତି—ତମେ କାଳେ ପଡ଼ିଯିବ ?

ପାର୍ବଣ—ପଡ଼ିଲେ ପରା ମୋ ବ୍ରତ ଭଙ୍ଗ ହବ, ମୁଁ ପଡ଼ିବ କେମିତି ? ତମେ ନାଚ ନାଚ ଚାଲ ।

କାର୍ତ୍ତି } —ହଉ ।
ବାସ }

[ଦୁହେଁ ନାଚ ନାଚ ଯିବାକୁ ଲଗିଲେ]

କାର୍ତ୍ତି —ଦେଖ !

ପାର୍ବଣ—ପୁଣି କଣ ହେଲା ?

ବାସ—ଏ ନାଚ ସାଙ୍ଗକୁ ଗୀତ ଗାଇବାକୁ ଆମର ମନ ହଉଚ !

ପାର୍ବଣ—ଗୀତ ଗାଇବ ? କାହିଁକି ?

କାର୍ତ୍ତି—ତମେ ତ କାନ୍ଧ ଉପରେ ଠିଆହେଲ । ନାଚ ଦେଖି-ପାରୁନ । ଗୀତ ଶୁଣି ତମ ମନ ଖୁସି ହବ ।

ପାର୍ବଣ—ଆହା, ମତେ ଖୁସି କରିବା ପାଇଁ ତୁମେ ଦୁଇ ଭାଇ କେତେ କଷ୍ଟ କରୁଚଟି ? ହଉ, ଗୀତ ଗାଅ ।

କାଫି }
ବାସ } — ( ଗୀତ )

ଚମ୍ପାଡାଳେ ପାରିଜାତ ମହକ ଭଲ
କିଏ ପାଇଚ କାହିଁ ?
ଚମ୍ପାମୂଳେ ପାରିଜାତ ଚମକ ଭଲ
କିଏ ଦେଖିଚ କାହିଁ ?

ଆମେ ନନ୍ଦନକାନନ କରି ଜୟ
ଚୋରି କରିଲୁ ଏ ପାରିଜାତ ଫୁଲ
ସେ ତ ଇନ୍ଦ୍ରାଣୀ ଗର୍ବର ଶୋଭା ତେଜ
ଆସି ଆମରି ମୁକୁଟ ଦେଲା ସାଜ
ରଜାପୁଅ କାନ୍ଧେ ଉଭା ଗୋପାଳମା
କିଏ ଦେଖିଚ କୁହ ?
ଏକା ଗୋପାଳମା ଲକ୍ଷେ ରାଜରାଣୀ
ତାଙ୍କୁ ସରି ତ ନୁହଁ ।

ଆମେ, ଗୋପ କେଳିପୁର କରି ଲୋଟି
ଡହୁଁ, ଗୋଟାଇ ଆଣିଲୁ ବାମା ଗୋଟି
ସେ ତ, ଆମ ଭାଗ୍ୟବଳେ ଦେଲା ଧରା
ଆମେ, ଧରାକୁ ମଣିଲୁ ତୁଚ୍ଛ ସରା
ନାରୀ ନୁହେଁ, ଫୁଲଭାର କାନ୍ଧରେ ବୋହି
ଆମେ କଲୁ ଭ୍ରମଣ
ତନ ପାଦେ ତନ ଥର କ୍ଷେପିବୁ ହେଲେ
ଏଇ ଏକାମ୍ର ବଣ ।

ଏଇ ଏକାମ୍ର ଶୋଭାକୁ ପାଦେ ଦଳ
ଆମେ କୁବେରପୁରୀକୁ ଯିବୁ ଚଳ
ସ୍ୱର୍ଗ ଆଣିବୁ ତା ଦ୍ୱାର ଗନ୍ତାଘର
ଶୁଣିଥା ଏ ବ୍ରହ୍ମା-ବିଷ୍ଣୁ-ମହେଶ୍ୱର
ଗୋଆଳମା ପାଦତଳେ ମଣି ମୁକ୍ତା
ସବୁ ଭେଟିବୁ ଆଣି
ବ୍ରତ ହେବ ପୂର୍ଣ୍ଣ, ହେବୁ ଗୋପବାଳା
ଆମ ଦୁହିଁଙ୍କ ରାଣୀ । ୩ ।

ବାସ—ଗୀତ କେମିତି ଲାଗିଲା ଦେବୀ ?

ପାର୍ବତୀ—ଯେମିତି ଗୀତ, ଯେମିତି ତୁମେ ଗାଇଲ, ମତେ ଠିକ୍ ସେମିତି ଲାଗିଲା ।

କାର୍ତ୍ତି—ମନଫୁଲାଣିଆ ଗୀତ, ଦେବୀଙ୍କୁ ନିଶ୍ଚେ ଭଲଲାଗିଥିବ ।

ବାସ—ଦେବୀ ମା !

ପାର୍ବତୀ—କୁହ ।

ବାସ—ନାଚ-ଗୀତ ତ ହେଲା । ଆମେ ଏଣିକି ବଡ଼ ବଡ଼ ପାହୁଣ୍ଡ ପକେଇ ଯିବୁ ।

ପାର୍ବତୀ—ଏଇ ଯାହା ଗୀତରେ ଗାଉଥିଲ ?

କାର୍ତ୍ତି—ହଁ, ତିନ ପାଦରେ ଆମେ ଏ ଏକାମ୍ର ବନ ତିନ ଥର ପରିକ୍ରମା କରିବୁ ।

ପାର୍ବତୀ—ହଉ, ଏବେ ପାହୁଣ୍ଡ ପକେଇ ଚାଲ ।

କାର୍ତ୍ତି—ତୁମେ ପଡ଼ିଯିବ ନାହିଁ ତ ?

ପାର୍ବତୀ—ଓହୋ, ପଡ଼ିଲେ ମୁଁ ପଡ଼ିବି, ସେଥିରେ ତୁମର କଣ ଅଛି ? ତୁମେ ଚାଲ ।

କାଉିଁ—ବାସ ! ମୋ ପାଦ ସାଙ୍ଗରେ ପାଦ ମିଳେଇ ପାହୁଣ୍ଡ ପକା ।

ବାସ—ପକେଇଲି ।

କାଉିଁ—ହୁଁ —

ବାସ—ହୁଁ —

( ଦୁହେଁ ବଡ଼ ପାହୁଣ୍ଡ ପକେଇବାର ପ୍ରୟାସ କଲେ । କିନ୍ତୁ ପାରିଲେ ନାହିଁ । ଦୁହେଁ ହତାଶ ହୋଇ ପଡ଼ିଲେ । )

କାଉିଁ—ବାସ !

ବାସ—କଣ ହେଲା ଭାଇ ?

କାଉିଁ—ମୋ ପାଦ···

ବାସ—ଚଳୁନାହିଁ ତ ?

କାଉିଁ—ନା ।

ବାସ—ମୋ ପାଦ ବି ଚଳୁନାହିଁ ।

କାଉିଁ—କାହିଁକି ଏମିତି ହେଲା ?

ବାସ—ତୁମେ···ତୁମେ ବୁଝିପାରୁଚ ତ ଭାଇ ? ଆମ···ଆମ କାନ୍ଧ ଉପରେ ଯେମିତି ଗୋଟାଏ ପାହାଡ଼ ଲଦିହୋଇ ଯାଉଚି । ଓଃ !

କାଉିଁ—ତୁ···ତୁ ଠିକ୍ କହୁଚୁ ବାସ ! ଫୁଲ ପରି ଉଶ୍ବାସ ଦେହଟା —ହଠାତ୍ ପାହାଡ଼ ପରି ଗରୁ ହୋଇ ଆସିଲାଣି । କଣ ଏ ରହସ୍ୟ !

ବାସ—ଆଃ ! ମୋ କାନ୍ଧ ଫାଟି ଫାଟି ଯାଉଚି ।

କାଉିଁ—ମୋ ମେରୁଦଣ୍ଡ ହାଡ଼ ଯେମିତି ଚୂନା ହୋଇ ଗଲାଣି । ଓଃ ! ···ଦେଖ ! ଆମ କାନ୍ଧ ଉପରୁ ତୁମେ ଓହ୍ଲାଇ ଯାଅ ଦେଖି !

ପାର୍ବତୀ—ଓହ୍ଲେଇଯିବ ? କାହିଁକି ?

ବାସ—ଆମେ ଆଜ ପାରୁନୁ ଦେଖି—ତମକୁ ଆଉ ବନ୍ଦନା କରି ପାରୁନୁ । ତୁମେ ଓହ୍ଲେଇଯାଅ । ଓଃ···ଓଃ···

ପାର୍ବତୀ—ତୁମେମାନେ ପରା ତ୍ରିଭୁବନ ଜୟ କରିଚ ? ସ୍ୱର୍ଗପୁରୀକୁ ଶ୍ମଶାନରେ ପରିଣତ କରିଚ ? ଧରିତ୍ରୀକୁ ସର୍ବସ୍ୱାନ୍ତ କରିଚ ? ପାତାଳପୁରୀକୁ ପଦାଘାତ କରି ରଖିଚ ? ଗୋଟାଏ ସାମାନ୍ୟ ନାରୀକୁ କାହିଁରେ ରଖିଥାନ୍ତ ?

କାର୍ତ୍ତି—ସେ ବକ୍ସର ତମରି ନୁହେଁ ଦେବୀ ! ତୁମେ ଓହ୍ଲେଇଯାଅ । ଓ-ହ୍ଲେ-ଇ ଯାଅ । ଆଃ—ଆଃ—ତା ନହେଲେ···ତୁମେ— ତୁମେ ଆଜ ଏ ମାୟା ରଚନା ନକରି ଏ ଗରୁଡ଼ଭାବ ତ୍ୟାଗ କର । ତମରି ପୂର୍ବ ଅବସ୍ଥାକୁ ଫେରିଆସ । ଆଃ···

ପାର୍ବତୀ—ଫେରିଯିବି ? ପୁଣି ଫୁଲ ପରି ଉଶ୍ୱାସ ହେବ ? ମୁଁ ଉଶ୍ୱାସ ହେଲେ ତମମାନଙ୍କ ଅତ୍ୟାଚାରରୁ ଏ ତ୍ରିଭୁବନ ମୁକ୍ତ ହେବ କେମିତି ? କେମିତି ଏ ପ୍ରାଣୀଜଗତ ଶାନ୍ତିର ନିଶ୍ୱାସମାରିବ ?

[ କାର୍ତ୍ତି ବାସ ଦୁହେଁ କ୍ରୋଧାନ୍ୱିତ ହୋଇଉଠିଲେ ]

କାର୍ତ୍ତି—ବୁଝିଲି, ଆମର ମୃତ୍ୟୁଭେଦ ତୋତେ ଜଣା । ସେଇଥିପାଇଁ ଏ ମାୟା ବିସ୍ତାର କରି ତୁ ଆମର ପ୍ରାଣ ନେବାକୁ ଆସିଚୁ । ହେଲେ, ଶୁଣ୍ ମାୟାବିନୀ ! ତୋର ଏ ମାୟାକୁ ଆମର ଭ୍ରୂକ୍ଷେପ ନାହିଁ । ଆମେ ଅସୁରଜାତି । ଶିରାଘାତରେ ପର୍ବତ ଟାଳିଦେଇପାରୁ । ତୋର ଏ ମାୟା-ପର୍ବତ ବିସ୍ତାରକୁ ମୁଁ ପବନରେ ତୁଳା ପରି ଉଡ଼େଇ ଦେବି । ···ଏଇ ଖଡ଼୍ଗାଘାତରେ—

ପାର୍ବତୀ—ଖଡ଼୍‌ଗାଘାତ ! ହାଃ-ହାଃ-ହାଃ···

[ନିଜର ଯଷ୍ଟିରେ ଖଡ଼୍‌ଗାଘାତକୁ ପ୍ରତିହତ କଲେ ]

କୀର୍ତ୍ତି—ଏଁ ! ଏ କଣ ? ଗୋପାଳମା ହାତର ଯଷ୍ଟି ଆଘାତରେ ମୋ ହାତର ଖଡ଼୍‌ଗ ଖସି ତଳେ ପଡ଼ିଲାଣି ! ··· ବାସ !

ବାସ—ଉପାୟ ନାହିଁ ଭାଇ । ଆଃ ! ତଳୁ ଖଡ଼୍‌ଗ ଉଠାଇ ଆଣିବାର ଶକ୍ତି ନାହିଁ ।

ପାର୍ବତୀ—ମୋର ମାୟାକୁ ଭ୍ରୂକ୍ଷେପ ନାହିଁ ପରା ? ଏଇ ଦେଖ, ମୋର କାୟା ବିସ୍ତାର କରି, ମୋ ଶରୀରରେ ସୁମେରୁ କୁମେରୁର ଶକ୍ତି ନେଇ, ମୁଁ ତୁମ ଦୁହିଁଙ୍କୁ ମୋ ପାଦରେ ଦଳନ କରୁଛି ।

କୀର୍ତ୍ତି }
ବାସ } — ଆଃ···ଆଃ !

ବାସ—ମୋର···ମୋର ଆଖିଡୋଳା ଫାଟି ରକ୍ତ ବାହାରି ଆସୁଛି ଭାଇ ! ଆଃ···

କୀର୍ତ୍ତି—ମୋର ଶ୍ୱାସ ରୁଦ୍ଧ ହୋଇ···କଣ୍ଠ ତାଳୁ ଶୁଖିଯାଉଛି ।

ପାର୍ବତୀ—ଏକାମ୍ର ବନ ଧ୍ୱଂସ କରିବ ? ସତୀର ସତୀତ୍ୱ ହରଣ କରିବ, ନା ?

ବାସ—ଏ ଭାରୀ ସଙ୍କଟଜନକ । ···ଆଃ ! ଆମ ପାଦତଳର ମାଟି ···ଦୁଇ ଭାଗ ହୋଇଯାଉଛି ।

କୀର୍ତ୍ତି—ଆଉ ରକ୍ଷା ନାହିଁ ବାସ ! ଆମେ···ଆମେ ମାଟି ଭିତରକୁ ଧସିଯାଉଛୁ ।

ପାର୍ବତୀ—ହଁ, ମୋ ପାଦରେ ଏମିତି ଦଳି ମକ୍ଷି ମୁଁ ତମ ଦୁହିଁଙ୍କୁ ମାଟି ତଳେ ମିଶାଇଦେବି ।

କାର୍ତ୍ତି
ବାସ } —ଆଃ···ଆଃ···

[ ଦୁହିଁଙ୍କ ମୃତ ଦେହ ମାଟିତଳେ ବିଲୀନ ହୋଇଗଲା । କୋପାନ୍ୱିତା ପାର୍ବତୀଙ୍କ ସମ୍ମୁଖରେ ଆସି ଉଭାହେଲେ ମାତା ବସୁନ୍ଧରା । ]

ବସୁନ୍ଧରା—ମା···ମା ପାର୍ବତୀ ! ମା ଦେବୀ ଭଗବତୀ ! କୋପ ତେଜି ଶାନ୍ତ ହୁଅ ମା—ଶାନ୍ତ ହୁଅ !

ପାର୍ବତୀ—କଏ ? କଏ ତୁମେ ?

ବସୁନ୍ଧରା—ମୁଁ ଧରଣୀ···ବସୁନ୍ଧରା । ମୋର ପ୍ରଣତି ନିଅ ମାତା ! କାର୍ତ୍ତି-ବାସ ଦୁହେଁ ପ୍ରାଣତ୍ୟାଗ କରି ମାଟିତଳେ ମିଶି-ଗଲେଣି । ଏବେ ତୁମର କ୍ରୋଧ ଶାନ୍ତ କର ମା !

ପାର୍ବତୀ—ତୁମେ କାହିଁକି ଏ ସମୟରେ ଆବିର୍ଭୂତା ହେଲ ଦେବୀ ?

ବସୁନ୍ଧରା—ତୁମକୁ ବନ୍ଦେଇ ଜଣାଇବା ପାଇଁ । ଏଇ କାର୍ତ୍ତି-ବାସ ଦୁଇ ଅସୁର—ଏ ଦୁଇ ଭାଇ ଏ ପୃଥିବୀକୁ ମହାଭାର ହୋଇ-ଥିଲେ । ଦିନକୁଦିନ ଏମାନଙ୍କ ଅତ୍ୟାଚାରରେ ମୋ ଶରୀର ଜର୍ଜରିତ ହେଉଥିଲା; ଧରାବାସୀ ପ୍ରମାଦ ଗଣୁଥିଲେ । ଏବେ ଏମାନଙ୍କ ବିନାଶରେ ଧରା ଉଶ୍ୱାସ ହେଲା ।···ଶାନ୍ତ ପ୍ରସନ୍ନ ମୁଖରେ ଥରେ ମୋ ଆଡ଼କୁ ଚାହଁ ମା ! ମୋ ଶରୀରରୁ ସବୁ କ୍ଳେଶ, ସବୁ କଳୁଷ ଧୋଇହୋଇଯିବ ।

ପାର୍ବତୀ—ତଥାସ୍ତୁ ଦେବୀ ବସୁନ୍ଧରା ! ଏ ଧରାବାସୀଙ୍କର ତୁମେ କଲ୍ୟାଣମୟୀ ମା । ତୁମର କଲ୍ୟାଣରୁ ସେମାନେ ନିର୍ଭୟରେ ତୁମରି କୋଳରେ ବାସ କରିବେ ।

ବସୁନ୍ଧରା—ଅତୀତରେ ଶୁମ୍ଭ ନିଶୁମ୍ଭ, ଚଣ୍ଡ ମୁଣ୍ଡ, ମହିଷାସୁର ପ୍ରଭୃତି ଦାନବମାନଙ୍କୁ ବିନାଶ କରିଥିଲ । ଆଜି ଏ ପବିତ୍ର ଏକାମ୍ର-ବନରେ କୀର୍ତ୍ତି-ବାସଙ୍କୁ ନାଶ କଲ ମା ! ଯୁଗେ ଯୁଗେ ପୃଥିବୀ ଉପରେ ତମର ଏମିତି ଜୟ-ପତାକା ଉଡ଼ୁଥାଉ ମା ! ହଁ, ମୋର ଗୋଟିଏ ବିନତି !

ପାର୍ବତୀ—ବିନତି ?

ବସୁନ୍ଧରା—କୀର୍ତ୍ତି-ବାସଙ୍କୁ ମନ୍ଥନ କରି ତମ ପଦାଘାତରେ ଏଇ ଯୋଉଠି ମାଟି ଖୋଳି ହୋଇଯାଇଛି, ଏ ସ୍ଥାନର ନାମ 'ଦେବୀପାଦହରା' ହେଉ । ଏବେ ଏଥିରେ ଜଳ ସୃଷ୍ଟିକର—ଏହା ଦିନେ ପୁଣ୍ୟତୀର୍ଥରେ ପରିଣତ ହେବ ।

ପାର୍ବତୀ—ଭଲକଥା । ତୁମର ଇଚ୍ଛା ପୂର୍ଣ୍ଣ ହେଉ ।

ବସୁନ୍ଧରା—ଦୈତ୍ୟ ନିଧନ କରି ତୁମେ କ୍ଲାନ୍ତ ହୋଇପଡ଼ିଛ ମାତା ! ବିଶ୍ରାମ ନିଅ···ମୁଁ ବିଦାୟ ନେଉଛି । [ପ୍ରସ୍ଥାନ]

ପାର୍ବତୀ—ହଁ, ମୁଁ କ୍ଲାନ୍ତ ହୋଇ ପଡ଼ିଛି । ଯାଏଁ ଟିକିଏ ବିଶ୍ରାମନିଏ ।

[ପଲ୍ଲବଶଯ୍ୟା ରଚନା କରି ପାର୍ବତୀ ଶୟନ କଲେ । ଟିକିଏ ପରେ ଅଦୂରରେ ଶିବ ପ୍ରବେଶ କଲେ । ]

ଶିବ—ଏଇ ପାହାଡ଼ ଶିଖରେ ଥାଇ ମୁଁ ଜାଣିପାରିଛି, ଦୁଇ ଦୁଷ୍ଟ ଦାନବ କୀର୍ତ୍ତି-ବାସଙ୍କୁ ଦେବୀ ପାଦରେ ଦଳନ କରି ବଧ କରିଚନ୍ତି । କିନ୍ତୁ ହେଲା କଣ ? ଅସୁର ନିଧନ ପରେ ତ ଦେବୀ ଏଠିକି ଆସିବା କଥା । ଏତେ ବିଳମ୍ବ ହେଲା କାହିଁକି ?··· ଯାଇ ଦେଖେଁ । (ପାଖକୁ ଆସି) ଆହା—ଦେବୀ ଏଇଠି ଶୋଇ-ପଡ଼ିଚନ୍ତି । ଶ୍ରାନ୍ତ କ୍ଲାନ୍ତ ହୋଇ ନିଜ ହାତରେ ପଲ୍ଲବଶଯ୍ୟା

ରଚନା କରି ଏଇଠି ନିଦ୍ରା ଯାଉଛନ୍ତି । ମୂର୍ତ୍ତି ଖୋଜିଲ ପଡ଼ୁଛି —ଶ୍ରୀଅଙ୍ଗରେ ବିନ୍ଦୁ ବିନ୍ଦୁ ଶ୍ରମଝାଳ ଲାଗିରହିଛି । ଦାନବ-ଦଳନ କରି ପାଦପଦ୍ମେ ରକ୍ତ-ଚର୍ଚ୍ଚିତ ।...ଦେବୀ ! କାଳେ କାଳେ ତୁମେ ଏମିତି ସବୁ ଦୁଃଖକଷ୍ଟକୁ ଆଡ଼େଇ ଦେଇ ପୃଥିବୀକୁ ଜଞ୍ଜାଳମୁକ୍ତ କରିଛ । ତୁମେ ଧନ୍ୟା...

( ଗୀତ )

ଗିରିରାଜସୁତା ଦେବୀ ଜଗତବନ୍ଦିତା ଗୋ
ଜଗତ-ହିତକାରିଣୀ ତ୍ରିପୁର ପୂଜିତା ଗୋ । ପଦ ।
ଏ ତୀର୍ଥ ଏକାମ୍ରବନ
ଏଥି ବନଦୁର୍ଗା ସମ,
ବଧି କୀର୍ତ୍ତି-ବାସେ ତୃପ୍ତ କଲ ବସୁମାତା ଗୋ । ୧ ।
ଏ କ୍ଷେତ୍ର ଭୁବନେଶ୍ୱର
ମହିମା ତା' ରଖାକଲ,
ଭୁବନେଶ୍ୱରୀ ଗୋ ତୁମେ, ତୁମେ ଆଦିମାତା ଗୋ । ୨ ।
ଶୀତଳ-ଚନ୍ଦନ-ଦେହୀ
ଆସରେ ମଲୁତ ବହି,
ପୋଛିନିଅ ଶ୍ରମଝାଳ ଦେବୀ ନିଦ୍ରାଗତା ହେ । ୩ ।
ବାରିଦ ହେ ମେଘମାଳା
ଡାକ ତୁମ ବାରିଧାର,
ଧୋଇନିଅ ପଦ୍ମପାଦୁ ରକତର ଚିତା ହେ । ୪ ।
ପ୍ରିୟତମା ଗୋ ଶାନ୍ତି
ସୁଖେ ନିଦ୍ରା ଯାଅ ସଙ୍ଗି,
ମଞ୍ଜୁଳ ଧୀରେ ଧୀରେ ପାଦ ପାଉ ମିତା ହେ । ୫ ।

[ ଶିବ ପାର୍ବତୀଙ୍କର ପାଦ ମଞ୍ଜାଳିଲେ ।
ଟିକିଏ ପରେ ପାର୍ବତୀଙ୍କ ନିଦ୍ରାଭଙ୍ଗ ହେଲା । ]

ପାର୍ବତୀ—କିଏ ?

ଶିବ—ନିଦ୍ରାଭଙ୍ଗ ହେଲା ଦେବୀ ? [ପାର୍ବତୀ ଉଠି ବସିଲେ]

ପାର୍ବତୀ—ଏ କଣ ପ୍ରଭୁ ! ମୋର ପାଦସେବା ତୁମେ କରୁଛ ? ମୋର ସ୍ୱାମୀ ତୁମେ, ପରମ ଆରାଧ୍ୟ । ମୁଁ ତୁମ ପାଦତଳର ଦାସୀ !

ଶିବ—ଶୁଣ ପାର୍ବତୀ···

ପାର୍ବତୀ—ନା ପ୍ରଭୁ ! ମୋର କିଛି ଶୁଣିବାକୁ ନାହିଁ । ମୋ ପାଦ ତୁମେ ଧରିଛ···ମୋ ଅପରାଧର ସୀମା ନାହିଁ । ତୁମେ ଦେବ-ଦେବ ମହାଦେବ···

( ଗୀତ )

ମହାଦେବ ମହେଶ୍ୱର ;
ପାଦସେବା କଲ ମୋର
ମରଣ ସନ୍ତୋଷ ହେଲା, ହେଲି ମୁଁ ନନ୍ଦିତା ହେ
ହେଲି ମୁଁ ନନ୍ଦିତା । ୧ ।

ଅପରାଧ କ୍ଷମାକର
ଧରୁଛି ତୁମ ପୟର
ନନ୍ଦେ ସାକ୍ଷୀ ବସୁମାତା, ଗଗନେ ସବିତା···

ଶିବ—

ଗିରିରାଜସୁତା, ତୁମେ ଜଗତବନ୍ଦିତା ଗୋ
ଜଗତ-ହିତକାରିଣୀ ତ୍ରିଲୋକ-ସେବିତା ଗୋ
ଗିରିରାଜ ସୁତା । ୧ ।

ଶିବ—ନା ଦେବି ! ତୁମର ପଦସେବା କରି ମୁଁ ଅମାନ୍ତ କରିନାହିଁ କି ତୁମର କିଛି ଅପରାଧ ହୋଇନାହିଁ । ଯିଏ ବିଶ୍ୱର କଲ୍ୟାଣ କରେ, ନିଜ ଜୀବନ ଉତ୍ସର୍ଗ କରି ଯିଏ ଜଗତଜୀବନ ରକ୍ଷା-କରେ, ସିଏ ନାରୀ ହେଉ କି ପୁରୁଷ ହେଉ, ଚଣ୍ଡାଳ ହେଉ କି ବ୍ରାହ୍ମଣ ହେଉ, ତାର ସେବାକାରୀ—ମୁଁ ଏକା କାହିଁକି, ଏ ତ୍ରିଲୋକବାସୀ ସମସ୍ତେ ହୋଇପାରିଲେ ନିଜକୁ ଧନ୍ୟ ମନେ କରିବେ । ଏହା ମୋ କଥା ନୁହେଁ, ଏହା ହେଉଛି ଶାସ୍ତ୍ରଜ୍ଞ ପଣ୍ଡିତ ମୁନିଋଷିମାନଙ୍କର ବାଣୀ । ଏବେ ତୁମେ ସନ୍ତୁଷ୍ଟ ହୁଅ ।

ପାର୍ବତୀ—ଚିରକାଳ ତୁମର ପାଦତଳେ ବସି ମୁଁ ତୁମ ଶ୍ରୀମୁଖରୁ ଶାସ୍ତ୍ରବାଣୀ, ନୀତିବାଣୀ ଶୁଣିଆସିଛି । ଏ ମୋର ଜନ୍ମ-ଜନ୍ମାନ୍ତରର ସୌଭାଗ୍ୟ ।

ଶିବ—ତୁମେ···ତୁମେ ଅତି କ୍ଳାନ୍ତ ଜଣାପଡୁଛ ପାର୍ବତି ! ତୁମେ ବୋଧହୁଏ ତୃଷାର୍ତ୍ତ ?

ପାର୍ବତୀ—ହଁ, ଶୋଷରେ ମୋ କଣ୍ଠ ତାଳୁ ଶୁଖିଯାଉଛି । ମୁଁ ପାଣି ପିଇବି, ଶୀତଳ ପାଣି ।

ଶିବ—ମୁହୂର୍ତ୍ତେ ଅପେକ୍ଷା କର । ମୋ ତ୍ରିଶୂଳମୂନରେ ମୁଁ ଭୂମି ଖୋଳି ଜଳ ଆହରଣ କରୁଛି ।

[ ତ୍ରିଶୂଳ ମୂନରେ ଭୂମି ଖୋଳି ଜଳ ଆଣିଦେଲେ ।]

ଶିବ—ଏଇ ନିଅ ଦେବୀ ! ଶୀତଳ ନିର୍ମଳ ଜଳ ନିଅ ।

ପାର୍ବତୀ—(ପାନକରି) ଆଃ ! କି ଶାନ୍ତି । ଏ ଜଳର ପଟାନ୍ତର ନାହିଁ । ଦିବ୍ୟ, ସୁସ୍ୱାଦୁ ଶୀତଳ ଜଳ ।

ଶିବ—(ଚିନ୍ତାକରି) ଦେବି !

ପାର୍ବତୀ—କଣ ପ୍ରଭୁ ? କଣ ଭାବୁଛ ?

ଶିବ—ଆଜ ଏକ ମହାଯୋଗର ଦିନ । ଭୁବନେଶ୍ୱରର ପୂର୍ବ୍ୟତୀର୍ଥ ଏକାମ୍ର ବନରେ ତୁମେ ଦାନବ ଦଳନ କଲ । ତ୍ରିଶୂଳ-ମୂନରେ ବାମ୍ଫି ଖୋଳ ମୁଁ ଜଳ ଆହରଣ କଲି—ତୁମର ତୃଷା ମେଣ୍ଟିଲା । ଏଇ ତ୍ରିଶୂଳମୂନରେ ମୁଁ ଏଠି ଏକ ସୁଦୀର୍ଘ ପୁଷ୍କରିଣୀ ଖନନ କରିବ—ପୁଣ୍ୟ ପବିତ୍ର ଜଳାଶୟ ।

ପାର୍ବତୀ—ଜଳାଶୟ !

ଶିବ—ହଁ, ହ୍ରଦ ପରି ଏକ ଜଳାଶୟ ।

ପାର୍ବତୀ—ଅତି ଉତ୍ତମ କଥା ପ୍ରଭୁ ! ପବିତ୍ର ଶିବପୀଠର ଏଇ ଜଳାଶୟ ଯୁଗ ଯୁଗ ପାଇଁ ଖ୍ୟାତ ହୋଇ ରହିବ ।

ଶିବ—ବୃଷଭ ଯାଉ, ଋଷି ମୁନି, ଦେବଦେବୀ ଆଉ ତୀର୍ଥମାନଙ୍କୁ ନିମନ୍ତ୍ରଣ କରି ଆଣୁ । ପ୍ରତିଷ୍ଠା ତିଥିରେ ସମସ୍ତେ ଆସି ଯୋଗ ଦେବେ ।

( ଗୀତ )

ଯାଅ ତୁ ଚଳି ବୃଷଭ ବାହନ
ଭୂଲୋକରୁ ନାଗଲୋକ, ସିଦ୍ଧ ପୁଣି ଦେବଲୋକ
କରିବୁ ତୁ ସବୁ ତୀର୍ଥେ ଗମନ । ପଦ ।
ବ୍ରହ୍ମାପୁରର କହ ଯାଇ
କହିବୁ ଗୋଲୋକସାଇଁ
ଅମରଙ୍କଙ୍କ ମେଳେ ଏକାମ୍ରେ ଆସିବେ ହେଳେ
କରିଛନ୍ତି ଉମାପତି ବରଣ । ୧ ।
ଗଙ୍ଗାଠାରୁ ଗୋଦାବରୀ
ସବୁ ତୀର୍ଥେ ଥିବୁ ବରି
ସନକାଦି ମୁନିଗଣ ଆସନ୍ତୁ ଏଥି ବହନ
କରନ୍ତୁ ପ୍ରତିଷ୍ଠା ବିଧିବିଧାନ । ୨ ।

# ଅନ୍ତିମ ଦୃଶ୍ୟ

[ ସେଇ ଏକାମ୍ରପୀଠ । ବିନ୍ଦୁସାଗର ପ୍ରତିଷ୍ଠା କାର୍ଯ୍ୟ ଶେଷ ହୋଇଯାଇଛି । ଏହି ଉପଲକ୍ଷ୍ୟେ ବ୍ରହ୍ମା ବିଷ୍ଣୁ ଆଦି ଦେବଗଣ, ବହୁ ତୀର୍ଥ ଓ ବହୁ ମୁନିଋଷି ଆସି ଏକାମ୍ରପୀଠରେ ଠୁଳ ହୋଇଛନ୍ତି । ]

ସ୍ୱର—ଜୟ କୈଳାସନାଥ ଉମାପତିଙ୍କର ଜୟ ! ଜୟ ଦୁଷ୍ଟ-ନିବାରଣୀ କୀର୍ତ୍ତି-ବାସ-ସଂହାରଣୀ ଦେବୀ ପାର୍ବତୀଙ୍କର ଜୟ ! ଜୟ ଏକାମ୍ର-ଅଧିପତି ଲିଙ୍ଗରାଜ ଭୁବନେଶ୍ୱରଙ୍କର ଜୟ !

ଶିବ—ଆନନ୍ଦ ଉତ୍ସବ ଭିତରେ ସରୋବରର ଶୁଭ-ପ୍ରତିଷ୍ଠା କାର୍ଯ୍ୟ ଶେଷ ହେଲା । ଆମ ଦୁହିଁଙ୍କର ପରମ ସୌଭାଗ୍ୟ, ପିତାମହ ବ୍ରହ୍ମା, ଗୋଲୋକବିହାରୀ ବିଷ୍ଣୁ, ଇନ୍ଦ୍ର, କୁବେର ଆଦି ଦେବଗଣ, ବହୁ ତୀର୍ଥ, ବହୁ ମୁନିଋଷି ଏଇ ଏକାମ୍ରପୀଠରେ ଠୁଳହେଲେ । ସମସ୍ତଙ୍କ ମେଳରେ ଏ ସରୋବରର ଶୋଭା ଆଜ ଅଳକାପୁରୀର ଶୋଭା ଧାରଣ କରିଛି ।

ବିଷ୍ଣୁ—ଏ ଆନନ୍ଦ ଉତ୍ସବର ପୁଣ୍ୟ ତିଥିରେ ମୁଁ ପୁଣି ଥରେ ଦେବୀ ପାର୍ବତୀଙ୍କୁ ବଧାଇ ଜଣାଉଛି ।

ପାର୍ବତୀ—ମୋ ପ୍ରତି ବୈକୁଣ୍ଠନାଥ ଶ୍ରୀହରିଙ୍କର ଏ ଅନୁକମ୍ପା ମୁଁ ଭୁଲିଯିବି ନାହିଁ ।

ବିଷ୍ଣୁ—ଦାନବ ନିଧନ ପରେ ଦେବୀ ତୃଷାର୍ତ୍ତ ହୋଇପଡ଼ିଲେ । ଦେବୀଙ୍କୁ ଶୀତଳ ଜଳ ପାନ କରାଇବା ପାଇଁ ଉମାପତି ଶ୍ରୀହସ୍ତରେ ତ୍ରିଶୂଳ ଧରି ଏ ସରୋବର ଆଜି ବାର୍ଣ୍ଣି ଖନନ କଲେ । ଏ ଯୋଗାଯୋଗର ପଟାନ୍ତର ନାହିଁ ।

ବ୍ରହ୍ମା—ବୈକୁଣ୍ଠପତି ଯଥାର୍ଥ କହୁଛନ୍ତି । ଏ ଯୋଗାଯୋଗର କାହାଣୀ ଯୁଗ-ଯୁଗବ୍ୟାପୀ ଖ୍ୟାତ ହୋଇ ରହିବ । ଏ ସରୋବରର ଆକାର ଯେମିତି ବିରାଟ ଏହାର ମହିମା ମଧ୍ୟ ସେତିକ ଅପାର । ଏହାର ମହିମା ମଣିକର୍ଣ୍ଣିକା ତୀର୍ଥ ସହିତ ସମାନ ।

ବିଷ୍ଣୁ—ଆଜି ଏ ଏକାମ୍ରପୀଠର ମାହାତ୍ମ୍ୟ ସେଇପରି କାଶୀକ୍ଷେତ୍ରର ମାହାତ୍ମ୍ୟ ସହିତ ସମାନ । ଏ ଦୁଇ କ୍ଷେତ୍ର ମଧ୍ୟରେ କିଛି ଭିନ୍ନ ନାହିଁ—କିଛି ଭେଦ ନାହିଁ ।

ବ୍ରହ୍ମା—ହଁ, କାଶୀକ୍ଷେତ୍ର ବିଶ୍ୱେଶ୍ୱର ହେଉଚନ୍ତି ଏକାମ୍ରର ଭୁବନେଶ୍ୱର ।

ଶିବ—ପ୍ରତିଷ୍ଠା କର୍ମ ସମାପ୍ତ ହେଲେ ଯଥା ସମୟରେ ଆପଣମାନେ ବିଦାୟ ନେବେ । ତା ପୂର୍ବରୁ ମୋର ଏକ ନିବେଦନ···

ବିଷ୍ଣୁ—ନିବେଦନ ! ! ଦେବାଦେବ ମହାଦେବଙ୍କର ପୁଣି ନିବେଦନ ?

ବ୍ରହ୍ମା—ଯିଏ ଆଜ୍ଞାକାରୀ, ସିଏ ନିବେଦନ କରିବେ ?

ବିଷ୍ଣୁ—କିନ୍ତୁ କାହିଁକି, କାହା ପାଖରେ ଏ ନିବେଦନ ।

ଶିବ— ( ଗୀତ )

ଶୁଣ ପ୍ରଜାପତି, ଶୁଣ ହେ ଶ୍ରୀପତି
ଶୁଣ ସର୍ବ ଦେବଗଣ

ସବୁ ଋଷି ମୁନି ସବୁ ତୀର୍ଥ ପୁଣି
ଚରାଚରବାସୀ ଶୁଣ ହେ
ଏ ମୋ ମନକାମନା
ନିଜ ଗୁଣେ କର ସର୍ବେ ପୂରଣା ହେ । ୧ ।
ଏକାମ୍ର ବନର ଏଇ ସରୋବର
ଶୋଭା ଯଥା ପୂର୍ଣ୍ଣଇନ୍ଦୁ
ସବୁ ତୀର୍ଥ ସବୁ କ୍ଷେତ୍ରଗଣ ନିଜ
ଅଂଶ ଏକ ଏକ ବିନ୍ଦୁ ହେ
ଏଥି କର ସ୍ଥାପନ
ପୁଣ୍ୟ କର୍ମ ହେଉ ସମାପନ ହେ । ୨ ।

ଶିବ— ନିମନ୍ତ୍ରିତ ସବୁ ତୀର୍ଥ ନିଜ ଜଳର ଏକ ଏକ ବିନ୍ଦୁ ଏ ଜଳାଶୟରେ ରଖି ନିଜ ଭୂମିକୁ ବାହୁଡ଼ିଯିବେ । ତା'ହେଲେ ଏହାର ମାହାତ୍ମ୍ୟ ଚିରଦିନ ଅକ୍ଷୟ ରହିବ ।

ବ୍ରହ୍ମା—ଏହା ଅତି ଉତ୍ତମ କଥା, ଉତ୍ତମ ପ୍ରସ୍ତାବ ।

ବିଷ୍ଣୁ—ଏଥିପାଇଁ ନିବେଦନ ନୁହେଁ ପରମେଶ, ଆପଣ ନିର୍ଦ୍ଦେଶ ଦିଅନ୍ତୁ ।

ଶିବ—ମୁଁ ବର୍ତ୍ତମାନ ଜଣ ଜଣ କରି ତୀର୍ଥମାନଙ୍କୁ ଡାକୁଛି । ସବୁ ତୀର୍ଥ ସେମାନଙ୍କର ଏକ ଏକ ବିନ୍ଦୁ ଅଂଶ ଏ ଜଳାଶୟରେ ରଖି ଯାଆନ୍ତୁ ।

ମିଳିତ ସ୍ୱର—ଆଜ୍ଞା କରନ୍ତୁ ଦେବ ।

ଶିବ— ( ଗୀତ )

ଆସ ସ୍ୱର୍ଗଗଙ୍ଗା ତୁମେ ଅାଦ୍ୟ ଗଙ୍ଗା
ଆଦ୍ୟେ ରଖ ତୁମ ଅଂଶ

ଆସ ହେ ପ୍ରୟାଗ ରଖ ତୁମ ଭାଗ
ଆସ ମନେ ବନ୍ଧୁ ହର୍ଷ ହେ
ଆସ ମଣିକର୍ଣ୍ଣିକା
ଦେଖିଯାଅ ତୁମର କଣିକା ହେ । ୩ ।

ମିଳିତ ସ୍ୱର—ଜୟ ସ୍ୱର୍ଗଙ୍ଗା ପ୍ରୟାଗ ଆଦି ତୀର୍ଥଗଣଙ୍କର ଜୟ !

ଶିବ— ( ଗୀତ )

ଆସ ଗଙ୍ଗାଦ୍ୱାର ହେ ଗଙ୍ଗାସାଗର
ଆସ ପାତାଳବାହିନୀ
ଆସ ଇରାବତୀ ଆସ ସରସ୍ୱତୀ
କ୍ଷୀରୋଦ ଶୀତୋଦ ବେଣୀ ହେ
ଆସ କୃଷ୍ଣା କାବେରୀ
ଆସ ସପତ ସମୁଦ୍ର ବାରି ହେ । ୪ ।

ମିଳିତ ସ୍ୱର—ଜୟ ଗଙ୍ଗାଦ୍ୱାର ଗଙ୍ଗାସାଗର ଆଦି ତୀର୍ଥମାନଙ୍କର ଜୟ !

ଶିବ— ( ଗୀତ )

ଆସ ମାନସର ସପ୍ତ ପୁଣ୍ୟ ସର
ଋଷିକୁଲ୍ୟା ସପ୍ତଧାର
ସଙ୍ଗମ ସରୟୂ ବିପାସା ଶତଦ୍ରୁ
ବେଣୀ ନଦୀ ମନୋହର ହେ
ଆସ ଗୋମତୀ ତୀର୍ଥ
ଆସ ପମ୍ପା ଆଉ ପିତୃ ତୀର୍ଥ ହେ । ୫ ।

ମିଳିତ ସ୍ୱର—ଜୟ ମାନସରୋବର ଆଦି ତୀର୍ଥଗଣଙ୍କର ଜୟ !

ଶିବ— ( ଗୀତ )

ଡାକେ ଶୂଳପାଣି ଆସ ବୈତରଣୀ
ପ୍ରାଚୀ ଫଲ୍‌ଗୁଧାର ଆସ
ଆସ ପୁଣି ତୁମେ ଗଣ୍ଡକ ବାହୁଦା
ପୁଷ୍କର ନୈମିଷ ଆସ ହେ
ଆସ ତୀର୍ଥପ୍ରବର
ଧନ୍ୟ ହେଉ ଏବେ ସରୋବର ହେ । ୬ ।

ମିଳିତ ସ୍ୱର—ଜୟ ଫଲ୍‌ଗୁ ବୈତରଣୀ ଆଦି ତୀର୍ଥମାନଙ୍କର ଜୟ !
ଶିବ—ବର୍ତ୍ତମାନ ଏ ଜଳାଶୟର ନାମକରଣ···
ବ୍ରହ୍ମା—ସତେତ, ଏପର୍ଯ୍ୟନ୍ତ ନାମକରଣ ହୋଇନ ।
ପାର୍ବତୀ—ନାମକରଣ ଆପଣ କରନ୍ତୁ ପିତାମହ !
ବ୍ରହ୍ମା—ନା, ନାମକରଣ କରିବେ ଅଷ୍ଟୋତ୍ତରଶତ ନାମଧାରୀ ଶ୍ରୀ ବସ୍ତୁ ।
ବସ୍ତୁ—ନା, ନା ପିତାମହ ! ମହେଶ୍ୱର ସ୍ୱହସ୍ତରେ ଏହା ଖନନ କରିଛନ୍ତି । ନାମକରଣର ଅଧିକାରୀ ଏକା ସେଇ ।
ଶିବ—ମୁଁ ?
ବସ୍ତୁ—ହଁ, ଆପଣ ହିଁ ନାମକରଣ କରନ୍ତୁ ।

ଶିବ— (ଗୀତ)

ବନ୍ଦୁ ବନ୍ଦୁ ତୀର୍ଥଜଳରେ
ପୂର୍ଣ୍ଣ ଏ ସରୋବର,
ସେ ବନ୍ଦୁ ସ୍ମରଣେ ରଖିଲି
**ନାମ ବନ୍ଦୁସାଗର । ୧ ।**

ବ୍ରହ୍ମା—ଧନ୍ୟ ଧନ୍ୟ ମହାଦେବ ! ଏ ତୀର୍ଥର ଏ ନାମକରଣ ଯଥାର୍ଥ ହୋଇଛି ।

ବିଷ୍ଣୁ—ସତ୍ୟ କୈଳାସପତି ! ଏ ବିନ୍ଦୁସାଗର ନାମର ମାହାତ୍ମ୍ୟ ଅଛି, ମର୍ଯ୍ୟାଦା ଅଛି ।

ଶିବ—କିନ୍ତୁ ହେ ପୁରୁଷୋତ୍ତମ ! ଏ ବିନ୍ଦୁସାଗର ତଟରେ ଆପଣଙ୍କ ବିଗ୍ରହ ପ୍ରତିଷ୍ଠିତ ହେଲେ· ଏହାର ମର୍ଯ୍ୟାଦା ଶତ-ଗୁଣ ବୃଦ୍ଧି ପାଇବ । ଏ ସ୍ୱୀକୃତି ଆପଣ ଦିଅନ୍ତୁ ।

ବିଷ୍ଣୁ—ମୋ ବିଗ୍ରହ ?

ଶିବ—ହଁ ଗୋଲୋକପତି···

( ଗୀତ )

ରହିବେ ଏ ତଟେ ଆପଣେ
ସଙ୍ଗେ ଥିବେ ଅନନ୍ତ
ଅନନ୍ତ ପୁରୁଷୋତ୍ତମ, ଏ
ନାମେ ହୋଇବ ଖ୍ୟାତ । ୨ ।

ବିଷ୍ଣୁ—ମୁଁ ମୁକ୍ତପ୍ରାଣରେ ସ୍ୱୀକାର କରୁଛି ଦେବ, ବିନ୍ଦୁସାଗର-ତଟରେ ଅନନ୍ତ ବାସୁଦେବଙ୍କ ବିଗ୍ରହ ସ୍ଥାପିତ ହେବ ।

ବ୍ରହ୍ମା—ଏଇ ଆନନ୍ଦ ଉତ୍ସବ ଅବସରରେ ଆମମାନଙ୍କୁ ଏବେ ବିଦାୟ ଦିଅନ୍ତୁ ଭୁବନେଶ୍ୱର !

ମିଳିତ ସ୍ୱର—ଜୟ ପ୍ରଭୁ ଶିବ ଶଙ୍କରଙ୍କର ଜୟ !
ଜୟ ଦୁଷ୍ଟନିବାରଣୀ ମହାଦେବୀ ପାର୍ବତୀଙ୍କର ଜୟ

( ଗୀତ )

ଧନ୍ୟ ଏ ଏକାମ୍ରପୀଠ ମହିମା ଅପାର
ବିଜେ ଏଥି ଉମାପତି ଶ୍ରୀ ଭୁବନେଶ୍ୱର । ୧ ।
ପଞ୍ଚକୋଶ ଧାମ ଏହି ବହୁତୀର୍ଥେ ଭରା
ଶଙ୍କର ବାର୍ଣ୍ଣି ଆବର ଦେବାଦନ୍ଧରା । ୨ ।
ଜଳେ ଶିବ ସ୍ଥଳେ ଶିବ, ଶିବ ଏଥି ସାର
ଜଳରୂପୀ ଶିବ ପୁଣି ଏ 'ବିନ୍ଦୁସାଗର' । ୩ ।